# ଇନ୍ଦୁମତୀ

କବିତା କଳ୍ପଲତା

ଶ୍ରୀମତୀ ଅପର୍ଣ୍ଣା ଦେବୀ



କଟକ ପବ୍ଲିଶିଂ ହାଉସ୍

# ଇନ୍ଦୁମତୀ

( ପୌରାଣିକ କାବ୍ୟ )


କବିତା କଲ୍ପଲତା

ଶ୍ରୀମତୀ ଅପର୍ଣ୍ଣା ଦେବୀ



ଷଷ୍ଠ ସଂସ୍କରଣ

୧୯୮୬

— ପ୍ରକାଶକ —

ଶ୍ରୀ ରବୀନ୍ଦ୍ର ନାଥ ମହାନ୍ତି

**କଟକ ପବ୍ଲିଶିଂ ହାଉସ୍**

ବାଲୁ ବଜାର, କଟକ - ୨

ମୂଲ୍ୟ — ଟ. ୧୦ - ୦୦

# ଅଭିମତ

( ୧ )

ନାଟ୍ୟକବି ଶ୍ରୀମତୀ ଅପର୍ଣ୍ଣା ଦେବୀଙ୍କ ବିରଚିତ "ଇନ୍ଦୁମତୀ" କାବ୍ୟ ପାଠକରି ମୁଁ ପରମ ପରିତୋଷ ଲାଭ କରିଅଛି । ଏହି କାବ୍ୟର ଭାଷା ପ୍ରାଞ୍ଜଳ ଏବଂ ମଧୁର ସାଧୁଶବ୍ଦମାନଙ୍କରେ ବିଭୂଷିତ । ନାୟକନାୟିକାମାନଙ୍କର ଚରିତ୍ରଚିତ୍ରଣରେ କବିଙ୍କର ଶକ୍ତି ଅତି ସୁନ୍ଦର ଭାବରେ ପ୍ରସ୍ଫୁଟିତ ହୋଇଅଛି ଏବଂ ତହିଁରୁ କବିଙ୍କ ହୃଦୟ ଐଶୀ ପ୍ରେମ ଏବଂ ଭକ୍ତିରେ ଆପ୍ଲୁତ ଥିବାରୁ ପ୍ରତୀତ ଜନ୍ମୁଅଛି । ପ୍ରାକୃତିକ ଆଲେଖ୍ୟଚିତ୍ରଣରେ ମଧ୍ୟ କବି ସିଦ୍ଧହସ୍ତା । ଏପ୍ରକାର ସର୍ବାଙ୍ଗସୁନ୍ଦର କବିତା ଉତ୍କଳୀୟ ନାରୀଙ୍କ ଲେଖନୀରୁ ନିଃସୃତ ହୋଇଥିବାର ଦେଖି ମୁଁ ବିଶେଷରେ ଆପ୍ୟାୟିତ ହୋଇଅଛି । ବାସ୍ତବରେ ଲେଖିକାଙ୍କର ଲେଖନୀ ପ୍ରକୃତ କବିତ୍ୱଶକ୍ତିଶାଳିନୀ ।

ମୁଁ ଆଶାକରେ ଉତ୍କଳୀୟ ଯୁବକଯୁବତୀମଣ୍ଡଳୀରେ ଏହି କାବ୍ୟ ଖଣ୍ଡିକ ସମାଦୃତ ହେବ । ନୈସର୍ଗିକ କବିତ୍ୱଶକ୍ତିଶାଳିନୀ ନିଃସ୍ୱା ଏହି ନାରୀକବିଙ୍କର ଉତ୍ସାହ ବର୍ଦ୍ଧନାର୍ଥେ ସଙ୍ଗତିସମ୍ପନ୍ନ ଉଦାର-ହୃଦୟ ବ୍ୟକ୍ତିମାନେ ଏହି କାବ୍ୟରୁ କେତେ ଖଣ୍ଡ ଲେଖାଏଁ କ୍ରୟ କରିବା ଲାଗି ମୁଁ ଆନ୍ତରିକ ଅନୁରୋଧ କରୁଅଛି । ତାହାହେଲେ କବି ତାହାଙ୍କର ଅନ୍ୟାନ୍ୟ କବିତାଗୁଡ଼ିକ ପ୍ରକାଶ କରି ଆଧୁନିକ ଓଡ଼ିଆ ସାହିତ୍ୟକୁ ସମୃଦ୍ଧିଶାଳୀ କରିପାରିବେ । ଇତି ।

ପୁରୀ
ତା ୧ । ୨ । ୩୦ } ଶ୍ରୀ ମଧୁସୂଦନ ଦାସ

( ୨ )

ଶ୍ରୀମତୀ ଅପର୍ଣ୍ଣା ଦେବୀଙ୍କ ବିରଚିତ "ଇନ୍ଦୁମତୀ" କାବ୍ୟର ଅଧିକାଂଶ ପାଠକରି ମୁଁ ଅତ୍ୟନ୍ତ ଆନନ୍ଦିତ ହୋଇଅଛି । ପ୍ରାଚୀନ

ଉପ ଖ୍ୟାନଟିକୁ ନୂତନ ଗ୍ରନ୍ଥରେ ତାଳ ଅଭିନବ ଆକାର ଦେବାରେ ଗ୍ରନ୍ଥକର୍ତ୍ତ୍ରୀ ଯଥେଷ୍ଟ କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି । ଥରେ ପଢ଼ିବାକୁ ଆରମ୍ଭ କଲେ ଶେଷ ପର୍ଯ୍ୟନ୍ତ ଯିବାକୁ ପାଠକଙ୍କର ସ୍ୱତଃପ୍ରବୃତ୍ତି ଜନ୍ମିବ । କାବ୍ୟଟିର ଭାଷା ସରଳ, ମଧୁର ଓ ଚିତ୍ତାକର୍ଷକ ହୋଇଅଛି । ମୋର ସମ୍ପୂର୍ଣ୍ଣ ଆଶା, ଗ୍ରନ୍ଥଖଣ୍ଡି ଉତ୍କଳୀୟ ପାଠକ-ସଂସାରରେ ସମାଦର ଲାଭ କରିବ ।

କଟକ
ତା ୧୦ । ୧୨ । ୩୦ } ଶ୍ରୀ ବିଶ୍ୱନାଥ କର

( ୩ )

'ଇନ୍ଦୁମତୀ' କାବ୍ୟ ପଢ଼ି ମୁଁ ଯଥେଷ୍ଟ ଆନନ୍ଦ ଲାଭ କରିଅଛି । କାବ୍ୟଟି ପ୍ରାଚୀନ ରୀତିରେ ଓ ଛନ୍ଦରେ ଲିଖିତ ହେଲେ ହେଁ ଏହାର ସରଳ ଭାବ, ଲଳିତ ଭାଷା, ସ୍ୱାଭାବିକ ବର୍ଣ୍ଣନା ଓ ମନୋହର ଚରିତ୍ର-ଚିତ୍ରଣ—ଏହା ପାଇଁ ଆଧୁନିକ ସାହିତ୍ୟରେ ଏକ ଉଚ୍ଚ ସ୍ଥାନ ନିର୍ଦ୍ଦେଶ କରିବ, ଏଥିରେ ମୋର ସନ୍ଦେହ ନାହିଁ । ପାଠ ଆରମ୍ଭ କଲେ ଶେଷ ନ କରି ରହି ହେବ ନାହିଁ—ଏହା ହିଁ ଏ କାବ୍ୟର ଉତ୍କର୍ଷର ପ୍ରଧାନ ପ୍ରମାଣ । ଏ କାବ୍ୟଟି ଉତ୍କଳର ଯେ କୌଣସି ଲେଖକଙ୍କ ପକ୍ଷରେ ଗୌରବଜନକ, ଉତ୍କଳର ଜଣେ ନାରୀକବିଙ୍କ ପକ୍ଷରେ ତତୋଽଧିକ ଗୌରବର ବିଷୟ, ପୁଣି ଅପର୍ଣ୍ଣାଙ୍କ ପରି ଜଣେ ଅର୍ଦ୍ଧଶିକ୍ଷିତା, ଦରିଦ୍ରଗୃହିଣୀ, ଉତ୍କଳକୁଳବଧୂ ପକ୍ଷରେ ଏହା ଯେ କେତେ ଗୌରବ ବହ, ଏହା ଭାବି ମୁଁ ଚମତ୍କୃତ । 'କୁନ୍ତଳାକୁମାରୀ'ଙ୍କ ପରେ 'ଅପର୍ଣ୍ଣା'ଙ୍କ ଆବିର୍ଭାବ ଉତ୍କଳସାହିତ୍ୟର ତଥା ଉତ୍କଳ ନାରୀସମାଜର ମର୍ଯ୍ୟାଦା ବହୁପରିମାଣରେ ବର୍ଦ୍ଧନ କରି ପାରିବ ବୋଲି ମୋର ଆଶା ହୁଏ ।

କଟକ
ତା ୨୦ । ୧୨ । ୩୦ } ଶ୍ରୀ ବାଳକୃଷ୍ଣ କର

# ନିବେଦନ



ମୁଁ ଗୃହାଳୀ ଛଡ଼ା ଆଉ କୁଆଡ଼େ କିଛି ପଢ଼ି ନାହିଁ । ପ୍ରକୃତି-ଚିତ୍ର ଅବା କାହୁଁ ଦେଖିବି ? ଘରକାମ କରୁ କରୁ ମୋର ଦିନ ଯାଏ । ମୋର ଅବସର ଖୁବ୍ କମ୍ । ଅଭାବ ଲାଗି ମଧ୍ୟ ଖଣ୍ଡିଏ ଭଲ ବହି ପଢ଼ିବାକୁ ପାଏ ନାହିଁ । କିନ୍ତୁ କେଜାଣି କାହିଁକି, କବିତା ଲେଖିବାକୁ ମୋର ଭାରି ଇଚ୍ଛା । ସେହି ଇଚ୍ଛା ବଳରେ ଏ ବହି ଖଣ୍ଡିକ ଲେଖିଥିଲି । ଏହା ଘରେ ପଡ଼ି କୀଟଙ୍କ ଆହାର ହୋଇ ଥାଆନ୍ତା; ମାତ୍ର ସୌଭାଗ୍ୟକୁ ମାନନୀୟା ଶ୍ରୀମତୀ କେନ୍ଦୁଝର-ଧୀଶ୍ୱରୀ ମହୋଦୟା ମୋ ପ୍ରତି ଅନୁଗ୍ରହ କରି ଏଥିର ପ୍ରଥମ ସଂସ୍କରଣ ପ୍ରକାଶ କରିବାର ଭାର ଗ୍ରହଣ କରିଥିଲେ । ଏଥିରେ ଦୋଷ ଗୁଣ କଣ ଅଛି, ତାହା ଜାଣିବାକୁ ମୋର ଶକ୍ତି ନାହିଁ । ଆଶା କରେଁ, ସହୃଦୟ ପାଠକପାଠିକାବର୍ଗ ଏଥିରେ ଥିବା ଭ୍ରମ ଲାଗି ମୋତେ କ୍ଷମା ଦେଇ ଏଥିପ୍ରତି ଅନୁଗ୍ରହ ଦେଖାଇଲେ ମୋହର ସମସ୍ତ ଶ୍ରମ ସଫଳ ହେବ ।

ମୋର କନିଷ୍ଠପ୍ରତିମ ଶ୍ରୀମାନ୍ ରାମଚନ୍ଦ୍ର ମହାପାତ୍ର ଏମ୍. ଏ., ଏଲ୍. ଟି. କାବ୍ୟତୀର୍ଥ ଦ୍ୱିତୀୟ ସଂସ୍କରଣ ପୂର୍ବରୁ ଏ ଗ୍ରନ୍ଥଟି ଥରେ ଆମୂଳ ଦେଖିଥିବାରୁ ମୁଁ ତାଙ୍କୁ ଆଶୀର୍ବାଦ କରୁଅଛି ।

ମୋର ଭ୍ରାତୃକଳ୍ପ ଶ୍ରୀଯୁକ୍ତ ନାରାୟଣ ତ୍ରିପାଠୀ ମହୋଦୟଙ୍କ ଅକୃତ୍ରିମ ସାହାଯ୍ୟ ଓ ଉତ୍ସାହ ବ୍ୟତୀତ ମୋର ଏହି କ୍ଷୁଦ୍ର ଲେଖାଟି ଲୋକଲୋଚନର ଏକାବେଳକେ ଅଗୋଚର ହୋଇ ଥାଆନ୍ତା । ହୃଦୟର କୃତଜ୍ଞତା ଜଣାଇବା ପାଇଁ ମୋର ଭାଷା ନାହିଁ—ମୁଁ ଆଜୀବନ ତାଙ୍କ ନିକଟରେ ଋଣୀବଦ୍ଧ ରହିଲି । ଇତି ।

**ରଚୟିତ୍ରୀ**

# [illegible]

## ପ୍ରଥମ ସର୍ଗ

ହିମାଚଳ ପଦେ ଗଙ୍ଗା ଦେବୀ ଯହିଁ
ଗ୍ରୀବା ଭଙ୍ଗି ନମ୍ର ବେଶେ
କଳକଳ ନାଦେ ବହି ଆସୁଛନ୍ତି
କଳ-କଲ୍ଲୋଳିନୀ ବେଶେ,
ଭଦ୍ରାବତୀ ନାମେ ରାଜ୍ୟ ଥିଲା ତହିଁ
ବିଶାଳ ପ୍ରଦେଶ ଏକ
ଧନ, ଧାନ୍ୟ, ପୁଣ୍ୟ, ସୁଖ, ଶାନ୍ତି, ଶୌର୍ଯ୍ୟ-
ବୀର୍ଯ୍ୟବଳେ ଲଭି ଟେକ ।
ରାଜା ହଂସଧ୍ୱଜ ଧର୍ମପରାୟଣ
ଥିଲେ ତହିଁ ନରନାଥ,
କୁମାର ପ୍ରଥମ * କୁମାର ଯୁଗଳେ
ନାମ ଯାହାଙ୍କର ଖ୍ୟାତ ।
ସୁଧନ୍ୱା ସୁରଥ ବେନି ରାଜପୁତ୍ର
ଭକ୍ତକୁଳଚୂଡ଼ାମଣି
ନ୍ୟାୟୀ ଧର୍ମବନ୍ତ କର୍ତ୍ତବ୍ୟାନୁରକ୍ତ
କ୍ଷମୀ, ମାନୀ, ବୀରାଗ୍ରଣୀ ।

---

* କାର୍ତ୍ତିକେୟ ତୁଲ୍ୟ ।

ସୁଯୋଗ୍ୟ ନନ୍ଦନେ    ବୃଦ୍ଧ ନରବର
ଦେଇ ରାଜ୍ୟରକ୍ଷା ଭାର
ଅନାସକ୍ତେ ସିଂହା-    ସନେ ବସିଥିଲେ
ମିଥିଲେଶ ଘରକାର ।
ଶାସ୍ତ୍ର ଆଲୋଚନା    ଶାଶ୍ୱତ ଭାବନା
କରି ଜୀବନର ବ୍ରତ
ପିତାଙ୍କ ଆଦେଶେ    କୁମାର ସୁଧନ୍ୱା
ଦେଶ ପାଳନରେ ରତ ।
ଯୁବରାଜ ହୃଦ—    ପ୍ରଶସ୍ତ ପ୍ରତିମା
ସର୍ବଗୁଣେ ଅଲଙ୍କୃତା
ଯୁବରାଜ୍ଞୀ ପ୍ରଭା-    ବତୀ ଥିଲେ ଯଥା
ଶ୍ରୀରାମେ ଜନକସୁତା ।
ସରଳା ବିଦୁଷୀ    ଦୟାବତୀ ସତୀ
ସାଧ୍ୱୀ ସର୍ବାଙ୍ଗସୁନ୍ଦରୀ
କୁମାର ମାନସ—    ମାନସେ ବିଳସୁ—
ଥିଲେ ରାଜହଂସୀ ପରି ।
ପିତୃ ଆଦେଶରେ    ବହିଲେ କୁମାର
ସୁବିଶାଳ ରାଜ୍ୟଭାର,
ଦୁର୍ଦ୍ଦମଗଞ୍ଜନ    ପ୍ରକୃତିରଞ୍ଜନ
ବ୍ରତ କରି ମାତ୍ର ସାର
ରାଜକାର୍ଯ୍ୟେ ରତ    ଥିଲେ ହେଁ ତାଙ୍କର
ହରିପଦେ ଥିଲା ମନ
ଭକତ ପରାଣେ    ମୁକତି ବାସନା
ରାଜୁଥିଲା ଅନୁକ୍ଷଣ ।

ଘବନ୍ତ ମାନବେ ବନ୍ଧନ୍ତ ଜାହ୍ନବୀ
ନର ସ୍ୱାର୍ଥସିଦ୍ଧି ପାଇଁ,
ମାନ ଗତି ତାଙ୍କ ସର୍ବଦା ଯେପରି
ସାଗର ମିଳନ ଧାଇଁ ।
ମୃଗୟା ବିନୋଦେ ଯୁବରାଜ ଯବେ
ଜାହ୍ନବୀ ତୀର ଅରଣ୍ୟେ
ଭ୍ରମୁଥିଲେ ସଙ୍ଗେ ନ ଥିଲେ ସୁରଥ
ଅବା ଅନ୍ୟ ପରିଜନେ ।
ବନରୁ ସମ୍ମୁଖ ଦିଗେ ବନ୍ଧୁଥିଲେ
ପୁଣ୍ୟତୋୟା ସୁରେଶ୍ୱରୀ
ପ୍ରକୃତିରୂପିଣୀ କାନନଲକ୍ଷ୍ମୀର
ମଣି ଦରପଣ ପରି ।
ବଟ, ଚଳଦଳ, ଶିଂଶପା, ତମାଳ
ଆଦି ମହୀରୁହଗଣ
ବାୟୁବିକମ୍ପନ— ଛଳେ କଲେ କିବା
କୁମାରେ ଅଭିବାଦନ ?
ଶାଳ, ପିଆଶାଳ, ଦେବଦାରୁ, ତାଳ
ସର୍ବେ ହୋଇ ପନ୍ତ ପନ୍ତ
ଆତପ-ତାପିତ ଯୁବରାଜ ଶିରେ
ଟେକୁଥିଲେ କିବା ଛତ୍ର ?
ଘନ ବୃକ୍ଷ ଭେଦି ଝିନ ରବିକର
ରଚୁଥିଲା କି ଆଲଣ୍ଡ ?
ସେ ଦୀପ ନିଭାଇ ଦେଉଥିଲା କିବା
ଫଲ୍ଲିତ ଶାଖାପତ୍ର ?

ସୁମେୟୁ ବକୁଳ          ମାଧବୀ ମାଳତୀ
ଆଦି ପୁଷ୍ପତରୁମାନ
ପୁଷ୍ପବୃଷ୍ଟିଛଳେ          ରାଜାଗମେ କରୁ—
ଥିଲେ ଲଜାଞ୍ଜଳି ଦାନ ?
ଡାକୁଆ ଡାହୁକ          ଡାକୁଥିଲା କବା
ଉଦୁମ୍ବର ତରୁ ଶିରେ ?
ନୃତ୍ୟ କରୁଥିଲେ          ବରହିମଣ୍ଡଳୀ
ବର୍ହ ତୋଳି ଅବା ଧୀରେ ?
କୁଟଜ-ଶଙ୍ଖ କି          ବଜାଇ ମଧୁପ
ପାନ କରୁଥିଲା ମଧୁ ?
ସହକାର କୁଞ୍ଜେ          ପଞ୍ଚମେ ସଙ୍ଗୀତ
ଗାଉଥିଲା ପିକବଧୂ ?
ଘନ ପତ୍ରାଛନ୍ନ          ତିନ୍ତୁଳୀ ପାଦପେ
ବସି ଦ୍ୱିଜାଙ୍ଗନାଗଣ *
ମହାହର୍ଷେ ଯେତେ          ହୁଳହୁଳୀ ଦେଇ
କମ୍ପାଉଥିଲେ ଗଗନ ।
ଶୈବାଳେ ବେଷ୍ଟିତ          କମଳେ ମଣ୍ଡିତ
ଅଦୂରବର୍ତ୍ତୀ-ସରସୀ—
କଣ୍ଠରୁ ମୃଣାଳ          ଥଣ୍ଟେ ଧରି ଉଡ଼ି
ଆସୁଥିଲେ ହଂସ ହଂସୀ ।
ଏକାକୀ ଭ୍ରମଣ          କରୁଥିଲେ ତହିଁ
ହସ୍ତେ ଧରି ଧନୁଶର

---

* ପକ୍ଷିଣୀସମୂହ

ଭୁବନବିଜୟୀ ପୁଷ୍ପାୟୁଧ ପ୍ରାଏ
ପ୍ରଭାବନ୍ତ ପ୍ରାଣେଶ୍ୱର ।
ସହସା ଶ୍ରବଣେ ବାଜନ୍ତେ ନାରୀର
କରୁଣ କାତର ସ୍ୱନ,
ସଚକିତେ ବୀର ନୀରବେ ରହିଲେ
ତା ହେଲେ ଡେରି ଶ୍ରବଣ ।
ରାଜନୀତି ଧର୍ମ କଠୋର ନିୟମ
ଖେଳିଲା ମନେ ତାଙ୍କର,
ସ୍ୱର ଲକ୍ଷ କରି ଯୁବରାଜ ହେଲେ
ଦ୍ରୁତପଦେ ଅଗ୍ରସର ।
ଖଣ୍ଡେ ଦୂର ଯାଇ ଦେଖିଲେ ଅଦୂରେ
କାଳକେତୁ ଦୁରାତ୍ମର *
କଳାକରେ ରାହୁ ଗ୍ରାସିଲା ପରାଏ
ଧରି ଏକ ଯୋଷାକର,
ଆକର୍ଷଣ ବୃତ୍ତେ କରନ୍ତେ, ସେ ବାଳୀ
ଡାକୁଛି ଅତି କାତରେ
'ରକ୍ଷାକର ! ରକ୍ଷା- କର ! ଅବଳାକୁ
କିଏ ଅଛ ଏ ବନରେ ।'
ବ୍ୟାକୁଳତା ଆହା ! ବଂଶାକ୍ଷେ ଧର୍ଷିତା
କିବା ରାମପ୍ରଣୟିନୀ,
ଖଳ ଦୁଃଶାସନେ ତ୍ରାସିତା କି ଅବା
ପଞ୍ଚାଳ ରାଜନନ୍ଦିନୀ ?

---

* ବିନ୍ଧ୍ୟାଚଳବାସୀ ଦୈତ୍ୟବଂଶୋଦ୍ଭବ ଜନୈକ ଅନାର୍ଯ୍ୟ ରାଜା ।

ସୁବର୍ଣ୍ଣଲତିକା ଆଲୋଡ଼ିତା ଅବା
ଭୀମ ପ୍ରଭଞ୍ଜନବଳେ,
କୁରଙ୍ଗ କି ଅବା କାତରେ ଡାକଇ
ଘଢ଼ ସନ୍ଧାଣ କବଳେ ?
ଏ ବିପଦେ ସୁଧା ସ୍ୱରୂପ ତାହାର
ଦିଶୁଛି ଅତି ସୁନ୍ଦର,
ତରଙ୍ଗାକୁଳିତ ଚନ୍ଦ୍ର ପ୍ରତିବିମ୍ବ
ଦିଶେ ଯଥା ମନୋହର ।
ଇନ୍ଦୁ ବଦନରେ ସ୍ୱେଦବିନ୍ଦୁ ଝଳେ
ନିଭ ସ୍ୱଚ୍ଛ ମୁକ୍ତାଫଳ,
ଅସ୍ତବ୍ୟସ୍ତେ ତାକୁ ଚୁମ୍ବିଯାଏ ଆସି
କୁଟିଳ ଚୂର୍ଣ୍ଣ କୁନ୍ତଳ ।
ବିକଚ ଅମଳ— କମଳ୍ପ କରୁଣା—
ମୋତି ମତି ଅଶ୍ରୁ ଭାସେ
କୁରଙ୍ଗୀ ନୟନ ସୁରଙ୍ଗ ବରଣ
ଦାରୁଣ ଦାନବ ହାସେ ।
ମୁହୁର୍ମୁହୁଃ ଘନ— ଶ୍ୱାସେ ସୁଶୋଭନ
ନାଶା ସ୍ଫୀତ ସଂକୁଚିତ,
ଅଭିମାନଭରେ ହୁଏ ଥରେ ଥରେ
ଅଧରବଲ୍ଲୀ କମ୍ପିତ ।
ଚୁମ୍ବି କପୋଳକୁ ମଣି କର୍ଣ୍ଣପୁର
ଦୋଳେ ବେନି ଶ୍ରୁତିମୂଳେ
ଚନ୍ଦ୍ରେ ମାଗଜନା କରନ୍ତି କି ଅବା
ଆରବ୍ଧା ରୋହିଣୀ ଭୁଲେ ?

ଚରମେ ଦୋଳଇ ଆନତମ୍ବଲମ୍ବୀ
ରଚନମଣ୍ଡିତ ବେଣୀ,
କାଳନ୍ଦୀପ୍ରବାହେ ଭସି ଯାଉଛୁ କ
ରକ୍ତ କୋକନଦଶ୍ରେଣୀ ?
ସୁସଞ୍ଚ ରଚନ— କାଞ୍ଚନ ଜଡ଼ିତ
ଉଚ ଘଞ୍ଚ କୁଚ ପରେ
ଦୋଳାୟିତ ମୁକ୍ତା— ହାର ଛିଣ୍ଡିପଡ଼
ମଣ୍ଡି ତାରକାଚ କରେ ।
ବିଦ୍ୟୁବରଣୀର ଅଙ୍ଗେ ବିଜଡ଼ିତ
ଜଳଦମାଳ ଦୁକୂଳ
ଅଙ୍ଗୁ ଖସିବ ରୁ ବାମ କରେ ଧର
ତୁଅଇ ଅତି ବ୍ୟାକୁଳ ।
ବାମେତର କର ସବଳେ ଦାନବ
ଟାଣୁଅଛୁ ଘନ ଘନ,
ରୁଣୁ ଝୁଣୁ ନାଦେ କମ୍ପୁଅଛୁ ଚର୍ତ୍ତି
ମର୍କତ ମଣି କଙ୍କଣ ।
ବଳଭୁକ ପର ଅସଂଖ୍ୟ ଅନାର୍ଯ୍ୟ—
ସଇନଙ୍କ କୋଳାହଳେ
ମିଶି ଯାଉଅଛୁ ବାଳୀର ରୋଦନ
ଅନନ୍ତ ନଭୋମଣ୍ଡଳେ ।
କେଶରପୂଥରେ କୁରଙ୍ଗୀ ଆକାର
ଏ କାଳ ଛବି ବାମାର
ଭଦ୍ରାବତୀ ଯୁବ— ରାଜଙ୍କ ହୃଦୟେ
କଲା ଦାରୁଣ ପ୍ରହାର ।

ସେ ପ୍ରହାର ପ୍ରଚଣ୍ଡ- ଧମନୀରେ ଉଷ୍ଣ
ରକ୍ତସ୍ରୋତ ଦେଲା ବାନ୍ଧି,
ଆମନ୍ତ୍ର କାର୍ମୁକ ଡାକଲେ ଅଦୂରୁ
'ଭୟ ନାହିଁ', 'ଭୟ ନାହିଁ' !
ଚମକଚେ ଚାହିଁ ଦେଲା କାଳକେତୁ
ଶୁଣି ମେଘ-ମନ୍ଦ୍ର ବାଣ
ସେ ରୁଦ୍ରପ୍ରତାପ- ଯୁବାରୂପ ଦେଖି
ଶିଥିଳ ହେଲା ତା ପାଣି ।
କୋପେ ବକମ୍ପିତ ହୋଇ କାଳକେତୁ
ସୈନ୍ୟଙ୍କୁ ଦେଲା ଆଦେଶ,
"କିଏ ଏ ବର୍ବର ମୋ ଶିକାରେ ବାଧା
ଦିଏ, ଆଣ ଧରି କେଶ ।"
ସକ୍ରୋଧେ କୁମାର କହିଲେ, "ଆରେ ରେ
ଦୈତ୍ୟାଧମ କୁଳାଙ୍ଗାର !
ହଂସଧ୍ୱଜ ରାଜ୍ୟେ କି ସାହସେ କରୁ
ଅବଳାରେ ଅତ୍ୟାଚାର ?
ଜଣା ନାହିଁ କି ରେ ବୃଦ୍ଧ ରାଜାଙ୍କର
ଆଦେଶ ମସ୍ତକେ ଧରି
ଦୁଷ୍ଟ ବିଧ୍ୱଂସନେ ଶରଣ ରକ୍ଷଣେ
ସୁଧନ୍ୱା ଏଥି ପ୍ରହରୀ ?"
ଭୀଷଣ ଗର୍ଜନେ ସୈନ୍ୟେ କହେ ଦୈତ୍ୟ,
"ଏ ମୂଢ଼କୁ ଶୀଘ୍ର ମାର ।"
ନାରୀର ସନ୍ଧାନ କରି ବୀର କହେ
"ନିଜକୁ ଆଗ ସମ୍ଭାଳ ।"

ଅଗ୍ନି ପ୍ରଜ୍ୱଳନ୍ତ　　ଯୁବା କରୁ ଶର
ଛୁଟନ୍ତେ ବିଦ୍ୟୁତ ପରି
ପୃଷ୍ଠଭଙ୍ଗ ଦେଇ　　ସୈନ୍ୟଗଣେ କେଏ
କେଣେ ପଳାଇଲେ ଡରି !
ସୈନ୍ୟଭଙ୍ଗେ ହତ—　　ସାର୍ଥ୍ୟ କାଳକେତୁ
ଚୌଦ୍ଧଗେ ଗୃଦ୍ଧେଁ କାତରେ
ସ୍ୱଧର୍ମି ତା ଗଲା　　ଧନୁସ୍ତଳେ ଛନ୍ଦ
ଧଇଲେ ବୀର ସଙ୍କଟେ ।
ବିପଦ-ତରଙ୍ଗେ　　ବ୍ୟାକୁଳତା ଥିରୁ
ଲଭନ୍ତେ ଆଶ୍ରୟ-ତସ
ମୂର୍ଚ୍ଛିତେ ଏ କାଳେ　　ପଡ଼ିଲା ଭୂତଳେ
ଛିନ୍ନ ରମ୍ଭାତରୁ ପରି ।
"ମନ୍ତ୍ରର ସାଧନ,　　ଶସ୍ତ୍ରର ପାତନ"
ବୀରେଶର ଦୃଢ଼ପଣ
କରି ପାରିବ କି　　ପ୍ରାଣରଙ୍କ ମୂଢ଼
କାମାନ୍ଧ ଦାନବ ମନ ?
ଲଜ୍ଜ ବ୍ୟାଜ ତ୍ୟଜ　　ଖଡ୍ଗ କନ୍ଧେ ଦୈତ୍ୟ
ଶିରେ ଦେଇ ବେନି କର,
"ଶରଣ ପଶିଲ　　ଶରଣବତ୍ସଳ
ଯୁବରାଜ, ରକ୍ଷା କର !
ସୈନ୍ୟବଳହୀନ　　ଅସ୍ତ୍ରଶସ୍ତ୍ରଶୂନ୍ୟ
ତବ ପ୍ରତାପେ ତାପିତ .
ଶରଣାଗତକୁ　　ବଧି ବୀରଧର୍ମ
କର ନାହିଁ କଳୁଷିତ ।"

ବୋଇଲେ କୁମାର, "ରେ ନର୍ଲଜ୍ଜ ! ତୋର
ମନେ ତିଳେ ଶଙ୍କା ନାହିଁ,
ତୁ ସ୍ଥିର ଅନାର୍ଯ୍ୟ ହୋଇ ଉପଦ୍ରବ
କରୁ ଏ ରାଜ୍ୟରେ ଥାଇ !
ନିର୍ଜ୍ଜନ ପଥରେ ସୈନ୍ୟସହ କରି
ଅବଳାକୁ ଆକ୍ରମଣ,
ଶୃଗାଳ କୁକୁର ପରି ପ୍ରାଣଭିକ୍ଷା
ମାଗୁଅଛୁ ଦୁରାତ୍ମନ !
ଯାଅ, ଛାଡ଼ିଦେଲି, ଦେଖେଁ ଯଦି ତୋତେ
ଆଜ ଏ ରାଜ୍ୟ ସୀମାରେ
ସ୍କନ୍ଧୁ ଶିରଚ୍ୟୁତ କରି ଦେବି ତୋର
ଏ ଶାଣିତ ଅସିଧାରେ ।"
ଏହା କହି ଛାଡ଼ି- ଦେଲେ, ଊର୍ଦ୍ଧ୍ୱଶ୍ୱାସେ
ଦାନବ ଗଲା ପଳାଇ
କେଶରି-କବଳୁ ଜମ୍ବୁକ ଯେପରି
ପଳାଏ ପୃଷ୍ଠେ ନ ଚାହିଁ ।
ଏଣେ ଯୁବାଚାର୍ଯ୍ୟ- ସୌନ୍ଦର୍ଯ୍ୟବିମୁଗ୍‌ଧା
ଚାରୁଶୀଳା କୃଶୋଦରୀ
ଧରଣୀମଣ୍ଡନା ପଡ଼ିଛି ଧରାରେ
ଧରାଚମ୍ପାଙ୍ଗୀ ପରି ।
ଗଗନବିହାରି ନାରଦବିପଞ୍ଚୀ—
ଚ୍ୟୁତ ପାରିଜାତ ଅବା ?
ନବଘନ କୋଳୁ ଖସି ପଡ଼ିଅଛି
କିମ୍ବା କି କ୍ଷଣପ୍ରଭା ?

ପ୍ରଫୁଲ୍ଲ-ମାନସ- ଗଗନ ବାଳୀର
ମଦାନ୍ଧ ଦାନବ ଘନ-
ଘନ ଘନ ଆକ- ର୍ଷଣେ ହୋଇଥିଲା
ନୈରାଶ୍ୟତମିରାଚ୍ଛନ୍ନ !
ସହସା କୁମର— ଚନ୍ଦ୍ରମା ଉଦିତ
ହୋଇ ହୃଦେ ପଶି ତାର
ସାର୍ବଭୌମ ପଣେ ପ୍ରେମ ସିଂହାସନ
କଲେ ବଳେ ଅଧିକାର ।
ମହା ଦୁଃଖେ ମହା— ସୁଖର ଆଶୟୁ
ପାଇ ହୃଦୟୁ ଆବେଗେ
କାଳକେତୁ କରୁ ଚ୍ୟୁତ ହୋଇ ଧମ୍ମ
ପଡ଼ିଲା ମହୀରେ ବେଗେ ।
ବ୍ୟଥିତ କୁମର ଶିଘ୍ରଷଅଙ୍ଗୀର
କରି ଏ ଦଶା ଲୋକନ,
ବାତ୍ୟାଚ୍ଛିନ୍ନ ଲତା ଦେଖି ହୁଏ ଯଥା
ଉଦ୍ୟାନପାଳକ ମନ ।
କ୍ଷତିତ ହୃଦୟେ ସରସୀରୁ ଯୁବା
ଜଳ ଆଣି ତରତରେ
ବାଳାମୁଖେ ସିଞ୍ଚି ବଞ୍ଚିଲେ ସଧୀରେ
ଜଳାର୍ଦ୍ର ପଦ୍ମପତ୍ରରେ ।
ଯାର ଶୋଭା ଲୁହିଁ ଦେବେ ହେବେ ମୋହ
ନର ଅବା କେଉଁ ଛାର ?
ନୃପତିକୁମାର କତେଦ୍ରୟୁ ଧୀର
କରନ୍ତି ଶୁଶ୍ରୂଷା ତାର ।

ଶୀତତାପେ ମ୍ଳାନା      ବସୁମତୀ ଯଥା
ମଳୟାନିଳ ପରଶେ
ତଥା କୁମାରଙ୍କ      ଯତନେ ବାଳୀର
ଦ୍ୱିଗୁଣେ କାନ୍ତି ବିକଶେ;
କ୍ରମେ କ୍ରମେ ଅଙ୍ଗ      ଲଭି ଲାବଣ୍ୟାଙ୍ଗୀ
ଫେଡ଼ୁଁ ନେତ୍ରଇନ୍ଦୀବର
ବିଶ୍ୱବିମୋହନ      ଯୁବାରୂପେ ତାହା
ଝଲସିଗଲା ସତ୍ୱର।
କ୍ରୀଡ଼ାବତୀ କ୍ରୀଡ଼ା-      ବଶୁଁ ତରତରେ
ଉଠି ମୁଖ କରି ନତ
କୁମାର ପଙ୍କଜ-      ପଦ ସଉନ୍ଦର୍ଯ୍ୟ
ମଧୁପାନେ ହେଲା ରତ।
ବାଳୀକୁ ସମ୍ବୋଧି      ବୋଇଲେ କୁମାର,
"କିଏ ତୁମ୍ଭେ ବଗ୍ନନେ।
ଏକାକିନୀ କହିଁ      କରୁଛ ଭ୍ରମଣ
ଏ ଘୋର ନିର୍ଜନ ବନେ ?"
ଏ ଲଳିତ ମୃଦୁ      ମଧୁର ବଚନେ
ପଷାଣ ଗଲା ତରଳ
ମାତ୍ର ଲଜ୍ଜା ପ୍ରେମ      ବେନିଙ୍କ ମଧ୍ୟରେ
ଲାଗିଲା ବିଷମ କଳି।
ବେନିଏ ବେନିଙ୍କ      ପ୍ରତିଦ୍ୱନ୍ଦ୍ୱରେ କଲେ
ବାଳୀମନ ଟଣାଟଣି
ବାଳୀମନ ହେଲା      ସେ ଭାବସାଗର-
ତରଙ୍ଗେ କ୍ଷୁଦ୍ର ତରଣୀ।

ଲଜ୍ଜା କହେ, "ଛି ଛି ! ଧିକ ନାରୀଜନ୍ମ
କହନା କହନା କଥା,
କି ଭାଳିବେ ଯୁବ- ଶେଖର ଦେଖିଲେ
ତୋର ଏହି ପ୍ରଗଲ୍‌ଭତା ?"
ପ୍ରେମ ବୋଲେ, "ଦର- ଶନ ମାତ୍ରେ ଯକ
ଦେଲୁ ଯାହାଙ୍କୁ ଜୀବନ
ରକ୍ଷା କଲେ ଯେହୁ ସେହି ଜୀବନର
ଅମୂଲ୍ୟ ମହତ ଧନ ।
ତାଙ୍କ ପଦେ ଯେବେ ଜଣାଇବୁ ନାହିଁ
ହୃଦୟର କୃତଜ୍ଞତା,
ମନୋହର ବପୁ ଯୁବାଙ୍କ ହୃଦୟେ
ଲାଗିବ ଦାରୁଣ ବ୍ୟଥା ।"
ଲଜ୍ଜାରାଗପ୍ରଭା ଫୁଟିଲେ ପୁଲକ-
ପୂରିତ କପୋଳେ ତାର,
ପ୍ରେମ ଅନୁରୋଧେ ହୃଦୁଁ ଉଠି କଥା
ରହିଲା ଲାଗି ଗଳାର ।
ଦେଖି ତାର ସ୍ଥିତି କହନ୍ତି କୁମାର,
"ଏ ନୁହେଁ ଲଜ୍ଜାର ସ୍ଥଳ
ତବ ଇତିବୃତ୍ତ ଶୁଣିବା ଉତ୍କଣ୍ଠା
ହୋଇଛି ମୋର ପ୍ରବଳ ।"
ଯେଉଁ ପ୍ରେମସୂତ୍ରେ ଆବଦ୍ଧ ସତତ
ଚର ଅଚର ନିଚୟ
ନିଖିଳ ବ୍ରହ୍ମାଣ୍ଡ- ବାସୀ ଯାହାଠାରେ
ମାନନ୍ତି ପରାଜୟ;

କନ୍ଦରେ କନ୍ଦରେ ପ୍ରତିଧ୍ୱନିଛଳେ
ଉଠେ ଜୟଗୀତ ଯାଇ,
ତାର ଆଧିପତ୍ୟେ ଜଣିବା ପ୍ରୟାସ
ବୃଥା ନୁହେ କି ଲଙ୍କାର ?
'ଉତ୍କଣ୍ଠା ପ୍ରବଳ' ଶ୍ରବଣେ ଲଙ୍କାକୁ
କଣ୍ଠପୁରେ ଦେଇ ବାସ,
ସାରଲ୍ୟ ସହିତ ସଙ୍ଗେ ଯେନ ପ୍ରେମ
କଲା ପ୍ରତିଷ୍ଠା ପ୍ରକାଶ ।
ବୀଣାଜଣାକଣ୍ଠୀ ଲଙ୍କା ବିଜଡ଼ିତ
କରୁଣ ବିନୟ ସ୍ୱରେ
କହେ, ଯଥା କହେ ବସନ୍ତଦୂତିକା
ବସନ୍ତ ଋତୁ ଆଗରେ —
"ସିନ୍ଧୁରାଜ ସହୋ- ଦରା ଅଟେ ମୁହିଁ
ନାମ ମୋର ଇନ୍ଦୁମତୀ,
କେଦାରେଶ୍ୱରଙ୍କ * ଦରଶନ ଆଶେ
ଆସିଛୁ ଏଥି ସମ୍ପ୍ରତି ।
ଜଳପଥେ ନୌକା- ଯୋଗେ ଆସୁଥିଲି
ଆକ୍ରମିଲା ନିଶାଚର,
ସୈନ୍ୟବଳ ଯେନ ରକ୍ଷବର୍ଗ ସଙ୍ଗେ
କଲା ଭୀଷଣ ସମର ।
ଭୀତେ ତ୍ରସ୍ତେ ମୁହିଁ ପଳାଇ ଆସିଲି
ସଙ୍ଗେ ଧରି ସଖୀଗଣ,

---

* ଭଦ୍ରାବତୀର ସୁପ୍ରତିଷ୍ଠିତ ଶିବଲିଙ୍ଗବିଶେଷ ।

ଲୁଚଲା ଏ ବନେ, ଆସିଲା ଦାନବ
କର ବହୁ ଅନ୍ୱେଷଣ ।
ସେ ଭୀଷଣ ରୂପ ଦର୍ଶନେ ସଜନୀ-
ମାନେ ହୋଇ ଇତସ୍ତତଃ,
ପଳାଇଲେ ଘୁଞ୍ଚି ଏକାକିନୀ ଦେଖି
କଲା ଏତେ ବ୍ୟତିବ୍ୟସ୍ତ ।
ଭକ୍ତଶ୍ରେଷ୍ଠ ବୀର— କର୍ତ୍ତବ୍ୟାନୁରକ୍ତ
ଭଦ୍ରାବତୀ ଭାଗ୍ୟାକାଶ,
କୁମାର-ଚନ୍ଦ୍ରମା ଆଜ ମୋ ବିପଦ
ଅନ୍ଧକାର କଲ୍ ନାଶ ।
ତବ କୃପାବଳୁ ରକ୍ଷା ହେଲା ମୋର
ଅମୂଲ୍ୟ ମହତ୍ତ୍ୱ ଧନ,
କୃତଜ୍ଞ ପରାଣେ ଉପହାର ପଦେ
ଦେବାକୁ ବଳଇ ମନ ।"
ଭେଦିଗଲା ଯୁବା ମର୍ମେ ଏ ମଧୁର
ମୃଦୁ କରୁଣ ଝଙ୍କାର,
ମାତ୍ର ପ୍ରଭାବତୀ ପ୍ରେମରାଜ୍ୟ କର
ନ ପାରିଲା ଅଧିକାର ।
ସସ୍ମିତେ କୁମାର କହିଲେ ମଧୁରେ
"କିବା ଦେବ ଉପହାର ?
ବିଭୁ କରୁଣାରୁ ସକଳ ସମ୍ପଦ
ପୂର୍ଣ୍ଣ ଅଛି ସୁଧନ୍ୱାର ।"
ଇନ୍ଦୁମତୀ—ପ୍ରତିଜ୍ଞା କରିଛି ପାଦପଦ୍ମେ କିଛୁ
ଉପହାର ଦେବାପାଇଁ,

ସୁଧନ୍ୱା—ପ୍ରତିଜ୍ଞା ମୋହର ଶରଣାର୍ଥୀଠାରୁ
ଉପହାର ନେବ ନାହିଁ ।
ଇନ୍ଦୁମତୀ—କ୍ଷତ୍ରିୟସୁତା ମୁଁ କପଟ ଲଙ୍ଘନ
କରିବ ପ୍ରତିଜ୍ଞା କଥା ?
ସୁଧନ୍ୱା—ଭାବ ଦେଖ ଥରେ କ୍ଷତ୍ରିୟ ବାକ୍ୟ କ
ହୋଇ ପାରଇ ଅନ୍ୟଥା ?
ଇନ୍ଦୁମତୀ—ଉପହାର ଦେବା ପାଇଁ କରିଅଛୁ
ମରଣ ପର୍ଯ୍ୟନ୍ତ ପଣ,
ସୁଧନ୍ୱା—କାୟମନୋବାକ୍ୟେ ତୁମ୍ଭଠାରୁ କିଛି
କରି ନ ପାରେ ଗ୍ରହଣ ।
ବିଷାଦ-ତାପିତା ସ୍ୱତକମା ପରି
ଯୁବରାଜ ନବଘନେ
ଘନରସ ଆଶେ ପୁଲକରେ ଚାହିଁ-
ଥିଲା ସତୃଷ୍ଣ ନୟନେ;
ଏ ବାକ୍ୟ ଅଶନି- ପାତ ହୃଦତନ୍ତ୍ରୀ
ଛିନ୍ନଭିନ୍ନ କରି ତାର,
କଣ୍ଠ କରି ସ୍ତବ୍ଧ କଲା କଣ୍ଠରୁଦ୍ଧ
ଘୋଟିଲା ବିଶ୍ୱେ ଅନ୍ଧାର ।
ଆଶାତରୁବର ଉପୁଡ଼ି ପଡ଼ନ୍ତେ
ଧୈର୍ଯ୍ୟ ନ ପାରିଲା ଧରି ।
ଗଣ୍ଡେ କର ଦେଇ ବସି ପଡ଼ିଲା ସେ
ଆନନ ଆନତ କରି ।
ଅମରଦୁର୍ଲଭ ଶୋଭାର୍ଙ୍ଗୀର ଦେଖି
ଏ ଦାରୁଣ ଅଭିନୟ,

ବସୁସ୍ତେ ବଷାଦେ ଯୁବରାଜଙ୍କର
ଅଥସ୍ଥ ହେଲା ହୃଦୟ ।
ବ୍ରୀଡ଼ାବତୀ ନାରୀ ସଲଜ୍ଜ ମାଧୁରୀ
ଅନୁଭବ ଥିବ ଯାର,
ସେ କାହୁଁ କଳବ ଅଯାଚିତ ପ୍ରେମ-
ଅଭିଳାଷ ପ୍ରଗଲ୍‌ଭର ?
ତଥା ଇନ୍ଦୁମତୀ ମରମ ବେଦନା
ନ ହେଲା ତାଙ୍କୁ ଗୋଚର,
ଯୁବରାଜ୍ଞୀ ପ୍ରୀତି- ସଞ୍ଚରଭେ ଯେଣୁ
ପୂରି ତ ଥିଲା ଅନ୍ତର ।
ଘନ ବନ ଅନ୍ତ- ରାଳେ ଲୁଚି ଲୁଚି
ବନ୍ଧୁ ଅନ୍ୱେଷଣ କରି
ଜେମା ପାଶେ ଆସି ମିଳଲେ ଏ କାଳେ
ସର୍ବ ପ୍ରିୟ ସହଚରୀ ।
କୁମାର କୁମାରୀ ଚଉପାଶେ ଘେରି
ଦିଶିଲେ ସକଳ ଆଳୀ
ବସନ୍ତ ପ୍ରକୃତି ଦେବନଙ୍କ ଗହଣେ
ଯେସନେ କୁସୁମ ଆଳି ।
ଦେଖିଲେ ସଖୀଏ ବସିଛନ୍ତି ଜେମା
ନ୍ୟସ୍ତ କରି ଗଣ୍ଡେ କର,
ଊଭା ହୋଇଛନ୍ତି କନ୍ଦର୍ପ ସୁନ୍ଦର
ଯୁବା ଧରି ଧନୁଶର ।
ଆବାଲ୍ୟସଙ୍ଗିନୀ ଜେମାଙ୍କର ଦେଖି
ଏ କାରୁଣ୍ୟପୂର୍ଣ୍ଣ ଛବି

ବସ୍ତ୍ରସ୍ୱେ ଆପ୍ଳୁତ ହୋଇ ସଖୀଙ୍କର
ଗଲ୍ଲ ତଉ ବଳେ ଦ୍ରବ ।
ଉତ୍କଣ୍ଠିତ ମନେ ରମ୍ଭାବତୀ ସଖୀ
ପୁଚ୍ଛିଲ କୁମାରେ ଗୃହ୍ଵିଁ,
"କିଏ ତୁମ୍ଭେ ବୀର ? ସଜନୀ ଆମ୍ଭର
ବିଷାଦମୀ କାହିଁ ପାଇଁ ?
ଦୈତ୍ୟ ସୈନ୍ୟବଳ ଆକ୍ରମଣେ ସର୍ବେ
ପଳାଇଲୁଁ ଇତସ୍ତତଃ
ରାଜନନ୍ଦମୀଙ୍କୁ ସଙ୍ଗତେ ନ ଦେଖି
ଖୋଜୁଥିଲୁଁ ହୋଇ ବ୍ୟସ୍ତ ।
ଅନୁମାନେ ଆସେ ତବ ସନ୍ଦର୍ଶନେ
ଦୈତ୍ୟବଳ ଭାଜିଲେଣି
ବୀରକଲ୍ପତରୁ ଆଶ୍ରି କେମାଙ୍କର
କପାଇଁ ଆଉ ରାଜେଣୀ ?"
ବୋଇଲେ କୁମାର "ଅଟେ ମୁହିଁ ଭଦ୍ରେ !
ଭଦ୍ରାବତୀ ଯୁବରାଜ,
ଏ ବନକୁ ଆସି- ଥିଲି ଅକସ୍ମାତେ
ମୃଗୟାବିନୋଦେ ଆଜ;
ଦୈତ୍ୟ ଆକ୍ରମଣେ ପ୍ରିୟସଖୀ ତବ
କାନ୍ଦୁଥିଲେ ଉଚ୍ଚ ସ୍ୱରେ
ସେ କାରୁଣ୍ୟଧ୍ୱନି ଲକ୍ଷ କରି ମୁହିଁ
ମିଳିଲି ଆସି ସତ୍ୱରେ ।
ଉପଯୁକ୍ତ ଶାସ୍ତି ଦେଇ ଦାନବକୁ
ଏ ସ୍ଥାନୁଁ କଲି ଅନ୍ତର

ମୂର୍ଚ୍ଛା ଯାଇ ମହୀ                                        ଲୋଟି ପଡ଼ୁଥିଲେ
ପ୍ରିୟ ସଜନୀ ଭୂମ୍ବର,
କହୁ କଷ୍ଟେ ତାଙ୍କୁ                                        ଚେତା କରାଇଲା,
ପ୍ରତି ଉପକାର ପାଇଁ—
ବ୍ୟଥିତା ହେବାରୁ                                        କହିଲା 'ମୁଁ କିଛୁ
ଗ୍ରହଣ କରିବ ନାହିଁ',
କ୍ଷାତ୍ର ଧର୍ମୋଚିତ                                        କର୍ତ୍ତବ୍ୟ ମୋହର
ଅବଶ୍ୟ ପାଳିବା କଥା
କ୍ଷତ୍ରିକନ୍ୟା ହୋଇ                                        ନ ବୁଝି ମନକୁ
ବୃଥା ଦେଉଛନ୍ତ ବ୍ୟଥା ।
ଦୈତ୍ୟ ଅପମାନେ                                        ତବ ଅଦର୍ଶନେ
ହୋଇ ଅଛନ୍ତି ହତାଶ
ଗତ କଥା ପାଇଁ                                        ଶୋଚନା ନ କର
କେଉଁଠାକୁ ଯିବ, ଭାଷ ।"
ରମ୍ଭାବତୀ କହେ                                        "କେଦାରେଶ୍ୱରଙ୍କ
ଦରଶନ ଅଭିଳାଷେ
ଜେମାଦେଈଙ୍କର                                        ଗହଣେ ସରବେ
ଆସିଥିଲୁଁ ମହୋଲ୍ଲାସେ
ମନ୍ଦ କରମକୁ                                        ଛନ୍ଦ ବନ୍ଧ ଆଣି
ଏ ଦାରୁଣ ଦଣ୍ଡ ଦେଲ
ଭକ୍ଷିବଲେ ହତ                                        କରି ଦୁରାତ୍ମାର
ସକଳ ସମ୍ପଦ ନେଲ ।
ଭବଦୀୟ କୃପା-                                        ବଳୁଁ ହେଲୁଁ ରକ୍ଷା,
କେଦାରଈଶ୍ୱରଙ୍କର—

ମଧ୍ୟରେ କପଟରେ ପହଞ୍ଚିବୁ ଯାଇ
ଏତକ ଭିକ୍ଷା ଆମ୍ଭର"
ଜେମାଙ୍କୁ କହିଲା, "ଉଠ ବରାରୋହେ !
ହୃଦେ ଧଇର୍ଯ୍ୟ ଧର,
କେଦାରେଶ୍ୱରଙ୍କ ଦର୍ଶନକୁ ଯିବା
ଆଉ ବିଳମ୍ବ ନ କର।"
ଚମକନ୍ତେ ଶୁଣି ଦେଖିଲା ଇନ୍ଦୁମତୀ
ପ୍ରିୟ ସଖୀ ଆବାହନେ
ସୂର୍ଯ୍ୟେ ମ୍ରିୟମାଣା କମଳିନୀ ଯଥା
ଉଷାକୁ ସ୍ନିଗ୍ଧ ନୟନେ;
ଦିବାକେଣେ ଧନୀ ଘର ପର ମଣି
ପ୍ରାଣ ବନ୍ଧୁଙ୍କୀକ ମନେ
ଯନ୍ତ୍ରାରୂଢ଼ ସ୍ୱର୍ଣ୍ଣ- ପ୍ରତିମା ପରାଏ
ଉଭା ହେଲା ନତାନନେ,
ଜେମା ମତ ଗତି ଦେଖି ସଖୀଚୟ
ହସାବେ ହେଲେ ବସ୍ମିତ;
ଏ ଗୂଢ଼ ରହସ୍ୟ ଚକ୍ଷୁ ମାତ୍ର କଳି
ନ ପାରିଲେ ତାଙ୍କ ଚିତ୍ତ;
ପୂଛିବା ପାଇଁ କ ସଖୀର ସାହସ
ନ ହେଲା କାହାର ମନେ,
କୁମାରଙ୍କ ସଙ୍ଗେ ବାହାରିଲେ ସର୍ବେ
କେଦାରେଶ୍ୱର ଦର୍ଶନେ ।
ସଜନୀ ଗହଣେ ମତ୍ତଗଜଗତି
ରମ୍ଭାବତୀ କର ଧରି,

ଗଡ଼ିଛନ୍ତି କି ଅବା　　　　ମଣ୍ଡି ଦେଉଥିଲା
ରକ୍ତାମ୍ବୁରେ ବସୁନ୍ଧରା ?
ବନଭୂମି ପ୍ରାନ୍ତେ　　　　ଜାହ୍ନବୀ ସୈକତେ
ଅସ୍ତ ଯାଉଥିଲେ ରବି,
ବାରୁଣୀ ଗଗନ-　　　　ପଟେ ଆଙ୍କି ପୀତ-
କରେ ନାନା ସ୍ୱର୍ଣ୍ଣ ଛବି ।
ସ୍ୱର୍ଣ୍ଣାଙ୍ଗୀ ବାରୁଣୀ-　　　　ରାଣୀ କ ମସ୍ତକେ
ଲଗାଇ ସିନ୍ଦୂର ବିନ୍ଦୁ,
ହେମ ବିମାନରେ　　　　ବସି ଦେଖୁଥିଲେ
ସନ୍ଧ୍ୟାକାଶଶୋଭା ଇନ୍ଦୁ ?
ପତିତପାବନୀ　　　　ସରିଦ୍‌ବରା ଅଙ୍ଗେ
ପଡ଼ି ଅସ୍ତ ରବିକର,
ସୁମନ୍ଦ ସମୀରେ　　　　ଖେଳୁଥିଲା ଧୀରେ
ବୀଚିମାଳା ସଙ୍ଗତର;
କୁଙ୍କୁମବରଣ　　　　ବଧୂମୁଖୀ ସନ୍ଧ୍ୟା
ସମାଗତା ହେବା ଶୁଣି,
ଦଳେ ଦଳେ ଉଡ଼ି　　　　ଆସୁଥିଲେ ପକ୍ଷୀ
ମାତ୍ରମୁଖେ ଗୀତ ଗାଇ;
ବଂଶବନପୁଞ୍ଜେ　　　　ବେତସନିକୁଞ୍ଜେ
ସୁଶ୍ୟାମଳ ନଳ ବନେ,
ତମିର ଆଶ୍ରୟେ　　　　ଶ୍ୱାପଦ ନିକର
ଛକିଥିଲେ ସଗୋପନେ;
ଗୋଟି ଗୋଟି ହୋଇ　　　　ଫୁଟି ଉଠୁଥିଲେ
ଗୋଧୂଳି କୁନ୍ତଳେ ତାରା,

ଧରାମୁଖେ ମାଡ଼ି ଆସୁଥିଲା ଶଶୀ
ରଜତ କରଣଧାର;
କୋକ କୋକବଧୂ କମଳମୀଠାରେ
ନ୍ୟସ୍ତ କରି ନିଜ ଦୁଃଖ,
କୁମୁଦନୀ ମୁଦ ଲଭୁଥିଲା ଦେଖି
ପ୍ରଫୁଲ୍ଲ ଚନ୍ଦ୍ରମା-ମୁଖ;
ଦୂରେ ଶିବାଳୟେ ଶୁଭୁଥିଲା ମନ୍ଦ୍ରେ
ସନ୍ଧ୍ୟା ଶଙ୍ଖ ଘଣ୍ଟା ସ୍ୱନ,
କୁମାରୀଙ୍କ ସଙ୍ଗେ ହେଲେ ଅଗ୍ରସର
ପ୍ରଭାବତୀ-ପ୍ରାଣଧନ ।



## ଦ୍ୱିତୀୟ ସର୍ଗ

ଯଥାକାଳେ ଶିବା- ଳୟେ ଉପନୀତ
ହୋଇ ସକଳ ସୁନ୍ଦରୀ,
ଦରଶନ କଲେ, ଭକ୍ତିଭରେ ପଦେ
ଦୁଃଖ ନିବେଦନ କରି ।
ସେବାକାରିଦଳେ ଆଦେଶ ବହିଲେ
ଯୁବରାଜ କୃପାଧାର—
"ଯଥାଯୋଗ୍ୟ ସ୍ଥାନେ ରଖାଇ ଏହାଙ୍କୁ
କରିବ ଯୋଗ୍ୟ ସତ୍କାର ।
ରାଜଭଣ୍ଡାରରୁ ପଠାଇବ ମୁହିଁ
ଅନୁରୂପ ଦ୍ରବ୍ୟଚୟ;

କର୍ମେ ତ୍ରୁଟି କଲେ ଉପଯୁକ୍ତଦଣ୍ଡ
ପାଇବ ତୁମ୍ଭେ ନିଶ୍ଚୟ ।"
ବାଳୀଙ୍କୁ ସମ୍ବୋଧି ବୋଇଲେ କୁମାର
"ହୁଅ ନାହିଁ ଅନୁତପ୍ତ,
ଅଜ୍ଞଥି ସ୍ୱରୂପେ ଆମ୍ଭ ରାଜ୍ୟ ଯେଣୁ
ହୋଇଅଛ ଉପଗତ;
କର୍ତ୍ତବ୍ୟ ମୋହର ତବ ସତକାର,
ନିଃଶଙ୍କେ ଏଠାରେ ରହ,
ଅଚିରେ ସ୍ୱଦେଶେ ଦେବ ପଠିଆଇ
ସଙ୍ଗେ ଦେଇ ସୈନ୍ୟ ଚୟ;
କାଲି ପ୍ରାତେ ପୁଣି ଆସିବ ଏଠାକୁ
ବାମାଙ୍କୁ ପ୍ରବୋଧ ଦେଇ,
ଶୁଦ୍ଧାନ୍ତାଭିମୁଖେ ଗମିଲେ କୁମାର
ଇନ୍ଦୁମତୀ ମନ ନେଇ ।
ଶଶୀଙ୍କ ବିହୁନେ ଲଭଇ ଯେ ଦଶା
ବରହ୍ୱଣୀ କୁମୁଦିନୀ,
କୁମାର ପ୍ରସ୍ଥାନେ ତଥା ମ୍ରିୟମାଣା
ହେଲା ନୃପତିନନ୍ଦିନୀ ।
ଦଗଧ ହୃଦୟେ ବିରସ ବଦନେ
ଧୀରବେ ନୀଳକୁନ୍ତଳା,
ସଖୀଙ୍କ ସଙ୍ଗତେ କୁମାର ନର୍ଦ୍ଦିଷ୍ଟ
ବାସ ଅଭିମୁଖେ ଗଲା ।
ରାଜ ଅନ୍ତଃପୁର— ରମଣୀମାନଙ୍କ
ଯଥାଯୋଗ୍ୟ ଉପଚାର,

ଭୃତ୍ୟଙ୍କ ହସ୍ତରେ ଶୀଘ୍ର ମନ୍ଦିରକୁ
ପଠାଇ ଦେଲେ କୁମାର ।
ଶଶବ୍ୟସ୍ତ ହୋଇ ଶଙ୍କିତ ହୃଦୟେ
ପ୍ରଭୁଙ୍କ ସେବକଗଣେ,
ଯେ ଯାହା କାର୍ଯ୍ୟରେ ଲାଗିଗଲେ ଖରେ
ମନ ଦେଇ ପ୍ରାଣପଣେ ।
ମନ୍ଦିର ସମୀପ— ଉପବନ ହର୍ମ୍ୟେ
ରହି ସକଳ ଅଙ୍ଗନା,
ରାଜଜେମାମନ ରଞ୍ଜନ ମାନସେ
କଲେ ନାନା ଜଳପନା ।
ଜଳଯାତ୍ରା ସୁଖ ଦୈତ୍ୟଦତ୍ତ ଦୁଃଖ
ପ୍ରଶାନ୍ତ ସୁଶୀଳ ଶାନ୍ତ
ଯୁବରାଜଙ୍କର ଉଦାରତା ଗୀତ
ଗାଇଲେ ସଜମାକ୍ରାନ୍ତ;
କୁମାର ପ୍ରଶଂସା ପକାଇ ସଖୀଏ
ହେଉଥାନ୍ତି ଠାରଠର
ମାତ୍ର ତାଙ୍କ ପାଶେ ବସିଥାଏ ଜେମା
ଆଲେଖ୍ୟ ପିତୁଳା ପରି;
ଜେମା ହାବ ଭଙ୍ଗୀ ଦେଖି ସଖୀଙ୍କର
ଫୁଟି ପଡୁଥାଏ ମନ,
ପରିହାସ କରି କହିବାକୁ ପଦେ
ଭଙ୍ଗୀ ଚାତୁର୍ଯ୍ୟ-ବଚନ;
ପରିମଳା ନାମେ ସଖୀଏ କହିଲା
ରତ୍ନାବତୀ ପ୍ରତି ଠାଇଁ,

"କାହିଁପାଇଁ ଜେମା ମଉନେ ଅଛନ୍ତି
ପାରିବୁ କି କହି ବାର ?"
ସେ କହେ 'କପଟ ଜାଣିଲି ମୁଁ ପରା
ଥିଲି ତୁମ୍ଭ ସଙ୍ଗେ ସଙ୍ଗେ
ଅନୁମାନେ ଆସେ ପ୍ରେମମାଦକତା
ଘାରିଲାଣି ସଖୀ ଅଙ୍ଗେ;
ଯେତେ ଲୁଚାଇଲେ ଲୁଚିବ କି ? ସେ ତ
ଫୁଟି ବିକଶିବ କାହୁଁ ;
ସଖୀ ତ କପଟେ କଲି ଆମ୍ଭଠାରେ
କହିବ କାହାକୁ ଆଜ ?"
କୁମାରେ ନବେଣୀ ମନ, ତାଙ୍କ ଗୁଣ
ଶୁଣୁଥିଲି ଡେରି କର୍ଣ୍ଣ,
କରକମଳରେ ମଣ୍ଡି ଟିର ବାଳା
ନତ କରି ଚନ୍ଦ୍ରାନନ,
ରତ୍ନାବତୀ ଗିରେ ଲଜ୍ଜାଭୟ ବଶେ
ହୃଦୟୁ ଭାବ ଲୁଚାଇ,
କୃତ୍ରିମ କୋପରେ କହିଲେ "ସଜନି !
ମୋ ଦୁଃଖ ଜାଣିଲ ନାହିଁ ?
ଶୁଣ ଦୁସ୍ତର ଅନାର୍ଯ୍ୟ ପାମର
ଦେଲି ଏତେ ଅପମାନ,
ଆର୍ଯ୍ୟ ରାଜପୁତ୍ରୀ ହୋଇ ଯା ସହିଲି
ଧିକ ଧିକ ମୋ ପରାଣ ।
କି ଯୋଗରେ ପୁଣି ଯାହା କରିଥିଲି
ବାଛି କଲି ଏତେ ସତ

କାହିଁ କଥା ଆଣି କାହିଁ ଲଗାଉଛ
ସବୁ ଜାଣିଥିଲ ପରି ।
କେମାର ଏ ମର୍ମ- ବେଦନା ସଖୀଙ୍କ
ମରମକୁ ଦେଲା ଘାରି
ଘାର୍ଘ ଶ୍ୱାସ ତେଜି ମାରବେ ରହିଲେ
ନୟନରେ ଭରି ବାରି;
ଏ କାଳେ ମନ୍ଦିରେ ସନ୍ଧ୍ୟାଧୂପ ବାଦ୍ୟ
ବାଜି ଉଠନ୍ତେ ସଘନେ
ସଖୀଗଣେ ନେଇ ଗଲା କଳଭାଙ୍ଗୀ
ସନ୍ଧ୍ୟାଳତି ଦରଶନେ ।
ଆଳତି ଦର୍ଶନୁ ଫେରି ସର୍ବେ ପ୍ରଭୁ---
ପ୍ରସାଦ କଲେ ସେବନ
କ୍ଷିରି ପୂରି ପିଠା ସୁସ୍ୱାଦୁ ବ୍ୟଞ୍ଜନ
ଘୃତପକ୍ୱ ଶାଳି ଅନ୍ନ ।
ସଖୀ ଅନୁରୋଧେ ବହୁ କଷ୍ଟେ କେମା
ମଣୋହିକ କଲା ବଳେ,
ମଣୋହି ସେ କସ କରିବ ? ତା ମନ
ଭ୍ରମୁଛି କେଉଁ ରାଇଜେ ।
ଚନ୍ତା କୁଞ୍ଜକାରେ ଫେଡ଼ୁଛି ଦୁଃଖିମା
ଭବିଷ୍ୟତ ପୁରଦ୍ୱାର,
ସେ ଖିଷଣ ଦୃଶ୍ୟ ଦର୍ଶନେ ହୃଦୟ
ଥରି ଯାଉଅଛି ତାର ।
ଆହାରାନ୍ତେ ସର୍ବେ ତୁଷାରଧବଳ
ଶଯ୍ୟାରେ କଲେ ଶୟନ

ଜେମା ତଉପାଶେ ଘେରି, ଯଥା ଚନ୍ଦ୍ରେ
କେତନ୍ତ ତାରକାଗଣ ।
ଶ୍ରାନ୍ତ-କାନ୍ତ କୁମା- ରୀଏ କୁମାରଙ୍କ
କରୁଣା ସ୍ମରି ହୃଦୟେ,
ନିଦ୍ରା-ଦେବୀଙ୍କର କୋମଳ ଅଙ୍କକୁ
ଭଜିଲେ ସର୍ବେ ନିର୍ଭୟେ ।
କେଦାରେଶ୍ୱରଙ୍କ ପଦ୍ଧତି ଆଳତି
ବନ୍ଦାପନା ମାତ୍ର ସାରି
କପାଟ ପକାଇ ନିଜ ନିଜ ପୁରେ
ଗଲେ ସବୁ ସେବାକାରୀ;
ରହିଲେ କେବଳ ପ୍ରହରୀ ଯୁଗଳ
ଉଦ୍ୟାନର ଦ୍ୱାରଦେଶେ
ନିୟୋଜିତ ହୋଇ ଆସିଥିଲେ ଆଗୁ
ଯୁବରାଜଙ୍କ ଆଦେଶେ ।
କ୍ରମେ କ୍ରମେ ମନ୍ତ୍ରୀ ମୀରବ ହୋଇଲା,
ଦୂରରେ ରାଜସୌଧ ଚୂଳେ;
ତାରକାଗୁମ୍ଫିତ ଚନ୍ଦ୍ରାତପତଳେ
ଆଲୋକମାଳିକା ଲୁଲେ,
ଧରଣୀ ଶ୍ରୀଅଙ୍ଗେ ପଡ଼ି ଜଡ଼ିଅଛି
ଧବଳ ଜ୍ୟୋତ୍ସ୍ନା-ବସନ,
ଯାମିନୀ କାମିନୀ ଝୁଣ୍ଟିଆ ନିଃସ୍ୱନ
ପ୍ରାୟେ ଶୁଭେ ଝିଲ୍ଲୀ ସ୍ୱନ,
ରଜନୀଗନ୍ଧାର ସୌରଭ ବେଢ଼ାଇ
ବାୟୁ ବହେ ଧୀରେ ଧୀରେ,

ଚକୋର ଚକୋରୀ    ମଧୁର ସଙ୍ଗୀତ
ଗାଉଥାନ୍ତି ଚନ୍ଦ୍ରଶିରେ,
ଅଦୂର କାନନୁ    ଥରେ ଥରେ ଆସି
ଭୀମ ରଢ଼ ଶାର୍ଦ୍ଦୂଳର
ନଗରୋପକଣ୍ଠେ    ଶ୍ୱାନ ଶୃଗାଳଙ୍କୁ
କରାଇ ଦଏ ମୁଖର ।
ଶାନ୍ତପ୍ରଦାୟିନୀ    ନିଦ୍ରା-ଅଙ୍କଶାୟୀ
ହେଲେ ସର୍ବ ନାରୀ ନର
କେବଳ ଜାଗ୍ରତ    ଜଗତେ ପ୍ରଣୟୀ;
ପ୍ରହରୀ, ରୋଗୀ, ତସ୍କର
ଉପବନ ହର୍ମ୍ମ୍ୟେ    ସିନ୍ଧୁରାଜସୂତା,
ନିଦ୍ରିତା ସଖୀମଣ୍ଡଳେ,
ବୀତନିଦ୍ରା ହୋଇ    ଗଣ୍ଡସ୍ଥଳଦ୍ୱୟ
ଭସାଉଛି ଅଶ୍ରୁଜଳେ ।
ବିଳାସେ ଲଳିତା    ନବ ବିକଶିତା
କୁସୁମ କୋମଳ ଅଙ୍ଗେ,
ବଜ୍ରକୀଟରୂପେ    ଯୁବରାଜ ପ୍ରେମ
ପଶି କାଟେ କ୍ରୂର ରଙ୍ଗେ ।
କ୍ଷାର ରୂପେ ତହିଁ    ଲାଗି ଯାଉଅଛି
ଦୈତ୍ୟଦତ୍ତ ଅପମାନ,
ସେ ଯନ୍ତ୍ରଣାବଳେ    ମୁହୁର୍ମୁହୁଃ ବାଳୀ
ହେଉଅଛି କମ୍ପମାନ ।
ଯେବଣ ସଖୀଙ୍କୁ    ପାଶରୁ ଅନ୍ତର
କରି ପାରେ ନାହିଁ କ୍ଷଣେ,

ଆଜ ତାଙ୍କ ସଙ୍ଗ ଲାଗୁଅଛି ଖଙ୍ଗ
ବିଷବଚ ବର୍ଷୁ ମଣେ ।
ଯୁବରାଜଙ୍କର କଠୋର ପ୍ରତିଜ୍ଞା
ଶୁଣିଲି ବେଳୁ ତା ମନ,
ନୈରାଶ୍ୟ-ଗହ୍ୱରେ ଆଶା-ମଣିମୟ
ସୌଧୁ ହୋଇଛି ପତନ !
ସେ ଗହ୍ୱର ତଳ- ପାଶେ ଜଳୁଅଛି
ଦପ ଦପ ଚିନ୍ତାନଳ,
ଅନଳେ ପତଙ୍ଗ ପରି ତାର ମନ
ହେଉଛି ତହିଁ ବିକଳ;
କାନ୍ଦ କହେ ବାଳା "କେମନ୍ତେ ଏହା ଥିଲି
ଆହା ରେ ଦାରୁଣ ବନ୍ଧ;
ଆଜୀବନ ଦଗ୍ଧ ହୋଇବା ପାଇଁକି
ଥିଲୁ ମୋ କରମେ ଲିଖି ।
ବିପଦ-ସାଗରେ ଭାସିଗଲି ବେଳେ
ଲଗାଇ ଆଶାର ତରୀ
କୂଳ ପ୍ରାପ୍ତକାଳେ ନୈରାଶ୍ୟ-ବାତ୍ୟାରେ
ଦେଲୁ ଖଣ୍ଡ ଖଣ୍ଡ କରି ।
କାଳକେତୁ କରେ ହୋଇଥିଲି ସିନା
ଦେହ ମାତ୍ର ମୋର ବନ୍ଦୀ,
ଏବେ କୁମାରଙ୍କ ପ୍ରେମଫାନ୍ଦେ ପଡ଼ି
ମନ ପ୍ରାଣ ହୁଏ ଧନ୍ଦ ।
ହୃଦ-ସିଂହାସନେ ବସାଇଲି ଯା'ଙ୍କୁ
ଦଇ ପ୍ରେମପୁଷ୍ପ ହାର,

ସେହି ହୃଦୟରେ ଥାଇ ଦେଉଛନ୍ତି
ଏବେ ଦାରୁଣ ପ୍ରହାର ।
ଯେତେ ଦୂରେ ଫିଙ୍ଗି ଦେଉଛନ୍ତି ସ୍ମୃତିକ
ଚେତନ ହୋଇ ଖୁବଳ,
ଘୁଣ ରୂପେ ଆସି ହୃଦୟରୁ ସାର
ଶୋଷି କରୁଛନ୍ତି ଦୁର୍ବଳ ।
ଆହା କି ମଧୁର ଲଳିତ ମୋହନ
ରୂପ ଯୁବରାଜଙ୍କର !
ବିବେକ ଔଦାର୍ଯ୍ୟ ବୀରତ୍ୱ ଗାମ୍ଭୀର୍ଯ୍ୟ
ଯହିଁ କରିଛନ୍ତି ଘର !
ମାନବୀ କି ଛାର ! ଶୋଭା ଦେଖି ଯାର
ଅମରୀ ହେବେ ମୋହିତା,
ବଚନପୀୟୂଷ ସେଚନେ ହୋଇବେ
ଶୁଷ୍କ ଲତା ପଲ୍ଲବିତା !
ଧନ୍ୟ ଭଦ୍ରାବତୀ, ଗର୍ଭେ ଧରି ଏହି
ତରୁଣ ମୌଳିମଣ୍ଡନ;
ଧନ୍ୟ ସେ ପ୍ରେମିକା ଯାର ପ୍ରେମମନ୍ତ୍ରେ
ଖଞ୍ଚିତ ଯୁବାରତନ ।
ଭକ୍ତବୀର ଧର୍ମ- ବୀର କର୍ମବୀର
ବୋଲି ନାମ ଖ୍ୟାତ ଯାର,
କି ଦୁଷ୍କୃତିବଶୁ ନ ଲଭିଲି ତାଙ୍କ
ପଦସେବା ଅଧିକାର !
ନବ ବିକଶିତ ପ୍ରେମପୁଷ୍ପ ମୋର
ହୋଇଗଲା ଛିନ୍ନଭିନ୍ନ,

ଦାବଦଗ୍ଧ ମୃଗୀ ପ୍ରାଏ ହେବ ସିନା
ବଞ୍ଚିଥିବ ଯେତେ ବନ !
କଳ୍ପତରୁ ଆଶ୍ରି ନ ପାଇଲା ଗ୍ରସ୍ଥା,
ପାରାବାର ଆଶ୍ରେ କରି
ନ ଛନ୍ଦିଲା କାୟା, ହେଲା ବଡ଼ମ୍ବିତା
ଶଶୀ ଆଶେ ଶଶା ପରି ।
ସୁଧା ଖାଇ ରାହୁ କ୍ଷୁଧା ନ ତୁଟିଲା
ପ୍ରାଏ ହେଲି ଅନାଥିନୀ,
ରାଜକୁଳେ କେହ୍ବି ଜନମି ନ ଥିବେ
ମୋହପରି ଅଭାଗିନୀ ।
କାଶୀରାଜସୁତା ଅମ୍ବା ପରି ହେଲି
ପ୍ରାଣନାଥ ଉପେକ୍ଷିତା,
ଶୂର କାଳକେତୁ ଲାଗି ସିନା ମୋର
ଆଜ ଏ ଦାରୁଣ ଚିନ୍ତା !
ଦେବବ୍ରତ ଲାଗି ଶାଲ୍ୱରାଜ ତାକୁ
ନ କଲା ପ୍ରାଏ ଗ୍ରହଣ,
କାଳକେତୁ ଲାଗି ଶରଣ ପିବାରୁ
କ ନ୍ତ କଲେ ନରାହଣ ।
ସାଧିଥିଲା ଅମ୍ବା ଧୀଷଣ ପ୍ରତିଜ୍ଞା
ଯେଉଁ ପ୍ରେମମନ୍ତ୍ର ବଳେ,
ସେହ୍ବି ପ୍ରେମମନ୍ତ୍ରେ ଦୀକ୍ଷିତା ହୋଇ ମୁଁ
କପରି ଅଛି ନିଶ୍ଚଳେ !
ମହାବୀର ଜୟ- ଦ୍ରଥ ପିତା ମୋର,
ମାତୁଳ କୁରୁ ରାଜନ

"ବନାଯୁଦ୍ଧେ ସୂଚୀ- ଅଗ୍ରେ ଭୂମି ଦେବ
ନାହିଁ" ଯାର ଦୃଢ଼ପଣ,
ବହୁଛି ତ ମୋର ଶୀଘ୍ର ପ୍ରଣୀଘରେ
ସେ ଉଗ୍ର କ୍ଷତ୍ରିୟ ରକ୍ତ;
କାହିଁ ସେ ସାହସ ? କାହିଁ ସେ ଦୃଢ଼ତା ?
କପାଁ ହେଉ ନାହିଁ ବ୍ୟକ୍ତ ?
କହୁଁ କହୁଁ ତାର କଣ୍ଠ ହେଲା ରୁଦ୍ଧ
ଶୁଷ୍କ ହେଲା ଅଶ୍ରୁଜଳ,
ପ୍ରେମ ଝଞ୍ଜାବାତ ପାଇ ପ୍ରଜ୍ୱଳିତ
ହେଲା ପ୍ରତିହିଂସାନଳ ।
ପ୍ରେମର ପ୍ରାବଲ୍ୟେ ଯେଉଁ ଅଭିମାନ
ଯାଇଥିଲା ମନୁ ଛାଡ଼ି,
ପାଇ ଅବସର ହୋଇ ସେ ପ୍ରବଳ
ଦେଲା ବାରମ୍ବାର ଧାଡ଼ି ।
କାଳକେତୁ-ଦଣ୍ଡ ଅପମାନ-ପ୍ରେତ
ଧରି ବିକଟ ଆକାର;
ନଇରାଶ୍ୟମୟ ତା ହୃଦ ପ୍ରାନ୍ତରେ
ନୃତ୍ୟ କଲା ଚମତ୍କାର ।
ଅନ୍ତର-ବାହାର ହୋଇଲା ବାଳାର
ଦଗ୍ଧ ପ୍ରତିହିଂସାନଳେ,
ଅବଳାସୁଲଭ କୋମଳତା କେଣେ
ଘୁଞ୍ଚିଗଲା ବଳେ ବଳେ ।
ସ୍ୱବଂଶ ଗରିମା ସେ ଅନଳେ ଯୋଗ-
ଦେଲା ଆହୁତି ରୂପରେ,

ଶୌର୍ଯ୍ୟ-ସୌର- କର ପଡ଼ିଗଲା
ଯୁବତୀ ଶୋଣିତସ୍ରୋତରେ ।
ପ୍ରେମ-ତୋଫାନେ ସେ ସ୍ରୋତ ଉତ୍କ୍ଷେପିତ
ହୁଅନ୍ତେ ଥରକୁ ଥର,
ତପ୍ତକାଞ୍ଚନାଙ୍ଗୀ ତପ୍ତଶ୍ୱାସ ତେଜି
ଉଠି ବସିଲା ସତ୍ୱର ।
ଶଯ୍ୟା ପରେ ବସି କହେ ଶୁଭ୍ରକେଶୀ
"ଏ ପ୍ରାଣେ କି ପ୍ରୟୋଜନ ?
ଯାହା ଲାଗି ପ୍ରାଣ ସାର୍ଥକ ହୁଅନ୍ତା
ସେ ତ କଲେ ବିସର୍ଜନ ?
ଏ ଦାରୁଣ ଦୁଃଖ ହୃଦୟେ ମୋହର
ଜଳୁଥିବ ଅଲକ୍ଷିତେ,
ଜଣାଇବି ନାହିଁ, ନ ଜାଣିବେ କେହି,
ସହିବି କାହା ନିମନ୍ତେ ?
ଯା ଲାଗି ବର୍ଜନ କଲେ ପ୍ରାଣଧନ
ତାଙ୍କୁ ନ କଲେ ନିଧନ,
ଘୋର କ୍ଷତ୍ରିକୁଳେ କଳଙ୍କିନୀ ପରି
ରହିବାର କି କାରଣ ?
ଇହଜନ୍ମେ ଯେବେ କରି ନ ପାରିବି
କାଳକେତୁକୁ ନିଧନ,
ଜନ୍ମାନ୍ତର ପାଇଁ ପ୍ରତିଜ୍ଞା ମୋହର
ସାକ୍ଷୀ ଧର୍ମ ନିରଞ୍ଜନ !"
ନିଦ୍ରିତା ସଖୀଙ୍କ ମେଳୁ ଉଠି ଧୀରେ
ଦ୍ୱାର କରି ଉଦ୍‌ଘାଟନ,

ମଣିଲ ଚୌଦିଗୁଁ ଶୁଣୁଛୁ କି ପ୍ରତି-
ହିଂସାର ଭୀମ ଗର୍ଜନ ?
ଉଦ୍ୟାନର ମଦ— ମନ୍ଦ ଗନ୍ଧବହ
ସଙ୍ଗତେ ମଲ୍ଲୀ, ନଆଳୀ,
ଯୂଥିକା, ସେବତୀ, ତଗର, କଞ୍ଚନ
ଖେଳୁଥିଲେ ଲୁଚକାଳି ।
ତାରକମଣ୍ଡିତ ଗଗନକୁ ଗର୍ବ
ଦେଖାଇ ଗଙ୍ଗଶିଉଳୀ,
ହସି ହସି ଖେଳ ଲୋଟି ପଡୁଥିଲା
ଧରଣୀ ପରେ ଜହ୍ନୁଲ ।
ରଜନୀରାଣୀର ସୁବର୍ଣ୍ଣକୁସୁମ
ରଞ୍ଜିତ ସୁନୀଳ ଶାଢ଼ୀ
ପରାଏ ମାଧବୀ ଦିଶୁଥାଏ ଜଡ଼,
ଜ୍ୟୋତିରିଙ୍ଗଣର ଧାଡ଼ି,
ନକଟ କେତକ କାନନୁ ସୌରଭ
ବହି ଆଣି ସମୀରଣ
ଉଦ୍ୟାନ କୁସୁମ- କୁମାରୀଙ୍କ ପାଶେ
କରୁଥିଲା ବିତରଣ;
ସୁଖ ବସନ୍ତରେ ସୁଖର ସମ୍ଭାର
ହୁଅଇ ଯେବେ ଅଭାବ
ଦୁଃଖମାତ୍ରା ବଢ଼ି ଯାଏ ଶତଗୁଣେ
ଲଭି ଅଭାବ ପ୍ରଭାବ ।
ଆସଙ୍ଗର ଲିପ୍ସା ବଳବତୀ ଯାର,
ପ୍ରତିହିଂସା ଯାର ପଣ,

ତାକୁ ଶୋଧିବାକୁ ପ୍ରକୃତ ସୌନ୍ଦର୍ଯ୍ୟ
ହୋଇପାରେ କି ଭାଜନ ?
ତେଣୁ ଏ ସୌନ୍ଦର୍ଯ୍ୟ ମନକୁ ତାହାର
ସ୍ପର୍ଶି ନ ପାରିଲା ଲେଶେ,
ଗାଢ଼ ନିଦ୍ରାଗତ ପ୍ରହସ୍ତ ଯୁଗଳେ
ଲଙ୍ଘି ଗଲା ବିନା କ୍ଲେଶେ ।
କେଦାରେଶ୍ୱରଙ୍କ ତୁଷାରଧବଳ
ବୃଷଭ ପୃଷ୍ଠ ଦେଶରେ,
ଉଭା ହୋଇ ବାଳୀ କରପଦ ଯୋଡ଼ି
ଜଣାଏ ଗଦ୍‌ଗଦ ସ୍ୱରେ—
"ଦେବ ଦିଗମ୍ବର ! ଦିଅ ଏହି ବର
କରୁଅଛି ନିବେଦନ,
ପ୍ରତିହିଂସା ସାଧି ଅଚିରେ କରିବି
ତବ ପଦ ଦରଶନ ।
ଭସ୍ମାଙ୍କୁରବାନା ଅଟଇ ଭୂମ୍ବର,
ଅବଳା ହୃଦୟେ ବଳ,
ଦେବା କଥା ଅବା କେତେକ ମାତର
ମିଳୁ ଦରଶନ ଫଳ ।
ଯଦ୍ୟପି କରୁଣା ହେବ ମୋତେ ଊଣା
ରଖିବି ନାହିଁ ଜୀବନ,
ତବ ଉଦ୍ଦେଶ୍ୟରେ ଜାହ୍ନବୀ ସଲିଳେ
କରିଦେବି ବିସର୍ଜନ ।"
ନୟନ-କମଳ- ନିଃସୃତ ସଲିଳେ
ବକ୍ଷୋଜ ପ୍ଲାବିତ କରି

ରାଜହର୍ମ୍ମ୍ୟ ମୁଖେ ରହିଁ ହେଲା ଉଭା
ରାଜପଥେ କୃଶୋଦରୀ ।
କୁମାର ଉଦ୍ଦେଶ୍ୟେ ପ୍ରଣିପାତ କରି
କହେ କମଳବଦନା—
"ଯାଉଛ ହେ ଦେବ ! ତବ ପ୍ରେମମନ୍ତ୍ର
କରିବା ପାଇଁ ସାଧନା ।
ସେ ମନ୍ତ୍ର ସାଧନେ ଭୀଷଣ ପ୍ରତିଜ୍ଞା
ପୂରଣ ହେବ ମୋହର
ଚରଣ ପଙ୍କଜୁ ବିଦାୟ ନେଉଛି
ବୀରଶ୍ରେଷ୍ଠ ପ୍ରାଣେଶ୍ୱର !"
ଏକେତ ଅବଳା ବିଦେଶିନୀ ବାଳା
ବିପଦ ପଥ ନ ଜାଣେ;
କେଉଁ ଦିଗେ ଯିବ ? କାହିଁ ବା ରହିବ ?
କିଏ ଶାନ୍ତି ଦେବ ପ୍ରାଣେ ?
ପ୍ରେମେ ଉନ୍ମାଦିନୀ ହୋଇ ସେ ବିରାଗୀ
ଚଳିଲା ଉତ୍ତର ମୁଖେ
ଶିଶିର ଛଳେ କି ମୁଞ୍ଚୁଥିଲେ ଅଶ୍ରୁ
ତରୁଲତା ତାର ଦୁଃଖେ ।
ପଥ ଅବରୋଧ କରିବାକୁ ଅବା
ଜାଣି ଭବିଷ୍ୟ ବିପଦ
ପତ୍ର ଗୋଟି ଗୋଟି ତରୁଅଙ୍ଗୁ ଝଡ଼ି
ଧରୁଥିଲେ ବାଳା ପଦ ।
କାନ୍ଦୁଥିଲା ଜଳ- ନାଦେ ନିର୍ଝରିଣୀ
ଅଦୂରେ ଗିରିକନ୍ଦରେ
ପ୍ରତିଧ୍ୱନି ଛଳେ ପ୍ରକୃତି ସୁନ୍ଦରୀ
କାନ୍ଦୁଥିଲେ ଚୌଦିଗରେ ।

# ତୃତୀୟ ସର୍ଗ

ନଗର ଉତ୍ତରେ ପ୍ରକାଣ୍ଡ ଅରଣ୍ୟ,
ନିବିଡ଼ ତରୁ ବ୍ରତତି
ଭେଦି ନ ପାରଇ ଦିନକରକର
ଯାହା ଘନ କୁଞ୍ଜତତି ।
କର୍କଶ ବନ୍ଧୁର ପଥ ଭୟଙ୍କର,
କଣ୍ଟକିତ ଗୁଳ୍ମଲତା
ଛନ୍ଦାଛନ୍ଦି ହୋଇ ରହିଛନ୍ତି ସବି
ପ୍ରେମେ ଲଭି ପ୍ରଫୁଲ୍ଲତା ।
ଅଶନ, ଶିଂଶପା, କକୁଭ, କୁଟଜ,
ତିନ୍ଦୁକ, ଧାନ୍ୱୀ, ପିଆଳ,
ଧବ, ହରିତକୀ, ନୀପ, ବିଭୀତକୀ,
ଉଦୁମ୍ବର, ଆମ୍ର, ଶାଳ,
ଅଶ୍ୱତ୍ଥ, ଶାଲ୍ମଳୀ, କପିଥ, ତିନ୍ତିଳି,
ଶିଂଶପ, ବଟ, ଶ୍ରୀଫଳ,
ଏ ଆଦି ଗହନ ପାଦପରେ ପୂର୍ଣ୍ଣ
ଥିଲା ସେ ଭୀଷଣ ସ୍ଥଳ ।
ଶାର୍ଦ୍ଦୂଳ, ବରାହ, ଶମ୍ବର, ଗବୟ,
ଭଲ୍ଲୁକ, ଗଣ୍ଡାର, କପି,
ଅରଣା ମହିଷ, ଶଲ୍ଲକୀ, ଖଟ୍ଟାଶ,
ଶଗାଳ, ବୃକ, କେଶରୀ;

ଏ ଆଦ୍ଧ ଯାବତ          ଭୀଷଣ ଶ୍ୱାପଦେ
ପରିପୂର୍ଣ୍ଣ ସେହି ବନ,
ଭ୍ରମନ୍ତି ନିର୍ଭୟେ          କୁପିତ ହୃଦୟେ
କାହିଁ ବା କରନ୍ତି ରଣ ।
କାହିଁ ଗିରିବର          ଉତ୍ତୁଙ୍ଗ ଶିଖର
ଟେକି ଉଚ୍ଚ ନଭସ୍ଥଳେ,
ଶିରୋଦେଶେ ଯାର          କରନ୍ତି ବିହାର
କିନ୍ନରକିନ୍ନରୀ ଦଳେ ।
ମାର୍ଦ୍ଦଳିକ ରୂପେ          ଜଳଧର ସହିଁ
ବଜାଏ କୁଳିଶ ବାଦ୍ୟ
ବନ ଗିରିବର୍ଗ          ପ୍ରକମ୍ପିତ ହୁଏ
ଶୁଣି ସେ ଭୀଷଣ ନାଦ ।
ଚମକ ପଡ଼ଇ          ଚପଳା ରୂପସୀ,
ନାଚନ୍ତି କଳାପକୁଳ,
ଗର୍ଜନ୍ତି ଶିଳୀନ୍ଧ୍ରେ          ଡାକନ୍ତି ଚାତକେ
ତୃଷାରେ ହୋଇ ଆକୁଳ ।
ବିକଶି ଉଠନ୍ତି          ଶିଳୀନ୍ଧ୍ରମଣ୍ଡଳୀ
ଝର ପଡ଼ନ୍ତି ଝର୍ଝରେ
ଭୁଗୁରୁ ଭୁଗୁକୁ          ଢେଇଁ ଶ୍ୟାମଲମେ
ଦର୍ଭ ଅଙ୍କୁର ନର୍ତ୍ତରେ ।
ଚମ୍ପା, ନାଗେଶ୍ୱର,          ଅଶୋକ, ପାଟଳୀ,
ମୁଚୁକୁନ୍ଦ, କନିଅର,
ବନ ଦେବତାଙ୍କୁ          ପୁଷ୍ପାଞ୍ଜଳି ସହିଁ
ଦେଉଥାନ୍ତି ନିରନ୍ତର;

କେତକୀ, କାଟକ                ବେତସ କାନନେ
ଠାବେ ଠାବେ ଅଛାଦିତ
ଘନ ଅନ୍ଧକାର                ସୂତିକା ଆଗାର
ଘର ଯା ହୁଏ ପ୍ରଣୀତ ।
ମଧୁକ, ମାଧବୀ,                ମାଲତୀ ସନ୍ନିଁରେ
କଲେ କୁସୁମ ବିକାଶ
ମଧୁ ମହୋତ୍ସବେ                ରତ ମଧୁକରେ
ନ ଛାଡ଼ନ୍ତି ତାଙ୍କ ପାଶ ।
ଦାତ୍ୟୂହ, ମୁନିଆଁ,                ଶାରୀ, ପିକ, ଶୁଆ,
ଚଷାପୁଅ, କଉଶିକ
ଭଦଭଦଳିଆ,                କୁକ୍କୁଟ, ଡାହୁକ
ଚରୁଥାନ୍ତି ଚୌର୍ଯ୍ୟହିକ ।
କାହିଁ ମଧୁଚକ୍ରେ                ଗୁଞ୍ଜରୁ ଅଛନ୍ତି
ମଧୁମକ୍ଷିକାମଣ୍ଡଳ
ମଦକଳ ପକ୍ଷି-                ସ୍ୱନେ ମୁଖରିତ
ହୋଇଅଛି କେଉଁ ସ୍ଥଳୀ ?
ମୃଗୀ କୃଷ୍ଣସାର                ହୋଇ ଦଳ ଦଳ
କରନ୍ତି କାହିଁ ବିହାର,
କାହିଁ ପଡ଼ିଅଛି                ଭୀଷଣ ଭୁଜଙ୍ଗ
କରି ବଦନ ବିସ୍ତାର,
ହୁଙ୍କାର ଶବଦେ                କାହିଁ ଗର୍ଜୁଁ ଗଛେ
ଡେଇଁ ଡେଇଁ କପିଗଣ
ସୁସ୍ୱାଦୁ ପନସ,                ରସାଳ, ଡାଳିମ୍ବ
କରୁଅଛନ୍ତି ଭକ୍ଷଣ ।

ଛୁଣ୍ଡାଇ ପଡର, ଘଙ୍ଗୁ ଛନ୍ତି ଡାଳ
ଖସି ପଡ଼ୁଅଛି ଫଳ,
ସୀତାବାଉଁ ଆଣି ମଧୁବନ ଅବା
ଲୁଟନ୍ତି ବାନର ଦଳ ?
ହର-ବଦାରିତ— କରି-କୁମ୍ଭ-ଚ୍ୟୁତ—
ମୌକ୍ତିକ ପଡ଼ିଛି କାହିଁ,
କପୋତ କପୋତୀ ଅନ୍ତରେ ତଣ୍ଡୁଳ
କଣ ଭ୍ରମ ଜନମାଇ !
କାହିଁ ତରୁକୋଟେ କାଳ ଭୁଜଙ୍ଗିମା
ଗୁହିଁଛି ଟେକି ମସ୍ତକ,
ନୀଳମଣିଦ୍ୟୁତି ନୟନ ଦଉଟି
ଦୂରୁଁ ଦିଶେ ଜକଜକ !
ଠାବେ ଠାବେ ଶୋଭେ କହ୍ଲାରମଣ୍ଡିତ
କମଳାଳଙ୍କୃତ ଜଳୀ
ତାରକାଖଚିତ ଆକାଶରୁ ଖଣ୍ଡେ
ଖସି ପଡ଼ିଥିଲା ଭଳି ।
ନୀଳମାରେ ଜିଣି ଇନ୍ଦ୍ରନୀଳମଣି
କାହିଁ ସୁବିସ୍ତୀର୍ଣ୍ଣ ସର
ପ୍ରକୃତି ରାଣୀର ବିଶାଳ ଦର୍ପଣ
ପ୍ରାୟେ ଦିଶେ ମନୋହର;
ପଦ୍ମବନୁ ଯାର ବିକଚ କମଳ
ଗନ୍ଧ ପାଇ ମଧୁକରେ
ଗୁଞ୍ଜରି ଗୁଞ୍ଜରି ଧାଆନ୍ତି ଆକୁଳେ
ଅନ୍ଧ ହୋଇ ସୌରଭରେ;

ପାଣିଶିଉଳୀର ପ୍ରସୂନେ ସକଳ
କାହିଁ ବଣେ ଚାରକଚ;
କାହିଁ ମାଳୋତ୍ପଳ ସଉରଭେ ବଗ
ହେଉଅଛୁ ଆମୋଦିତ ।
ଝିଙ୍କାରୀ ଝଙ୍କାର, ଶବ୍ଦ ନିଃସ୍ୱନ
ଯହିଁ ହୋଇ ସମ୍ମିଳିତ
ଜଳଦେବୀ କଳ- କଙ୍କିଣୀ କ୍ୱଣ
ପରାଏ ହୁଏ ଧ୍ୱନିତ;
କାହିଁ ମତ୍ସ୍ୟରଙ୍କ, ଗାଙ୍ଗୋଇ ଶୂନ୍ୟରେ
ଉଡ଼ି ସ୍ଥିର ରଖି ଲକ୍ଷ୍ୟ
ଚଳମତ୍ସ୍ୟ ଚଳ- ମାର ନେଉଛନ୍ତି
ଥରେ ଥରେ ଝାଡ଼ି ପକ୍ଷ ।
ଶଫରୀ ଲୋଭରେ ପାଣିକୁଆ ବୁଡ଼ି
ଆଲୋଡ଼ ଦେଉଛି ଜଳ,
ବକ, କଙ୍କ କୂଳେ ବସିଛନ୍ତି ହୋଇ
ଯୋଗୀଙ୍କ ପରି ନିଶ୍ଚଳ ।
ମରାଳୀ ମରାଳ ହୋଇ ମାଳ ମାଳ
କ୍ରୀଡ଼ୁଛନ୍ତି ନାନା ରଙ୍ଗେ,
ରଥାଙ୍ଗ ହୋଳଇ ଲହରୀ ଦୋଳାରେ
ପ୍ରେମମୋଦେ କାନ୍ତା ସଙ୍ଗେ
ସୁଶ୍ୟାମଳ ଦୂର୍ବା- ଦଳେ କାହିଁ ମହୀ
ବଣେ ଅତି ମନୋହର
ଧରଣୀ ରାଣୀ କି ପିନ୍ଧିଛୁ ସରାଗେ
ସୁନୀଳ ପଟ୍ଟ ଅମ୍ବର ?

ପୁଷ୍ପିତ କଦମ୍ବେ କରୁଅଛୁ କାହିଁ
ଶିଖଣ୍ଡୀ ତାଣ୍ଡବ ନାଟ,
ଇନ୍ଦ୍ରଧନୁପ୍ରଭ ପୁଚ୍ଛ ପଡ଼େ ଖସି
ଜୁର କର ଶୋଭାହାଟ ।
କାହିଁ ଜମ୍ବୁ ବୃକ୍ଷେ ଶାରକା କରନ୍ତି
ଜମ୍ବୁରସ ଆସ୍ୱାଦନ,
କାହିଁ ବନଭୂମି ଝଙ୍କାରିତ କରେ
କଷ୍ଟଫେଡ଼, ଶୁକସ୍ୱନ ।
ସାର୍ଦ୍ଧଗାବୀ ଚାଳ ଦୀର୍ଘ କଳେବର
ଟେକ ମାଳ ମାଳ ହୋଇ
ଦେଖନ୍ତି ସ୍ୱବପୁ ପଦତଳେ ସ୍ୱଚ୍ଛ
ପଲ୍ୱଳ-ଦର୍ପଣ ଥୋଇ ।
କରୁଛନ୍ତି କ୍ରୀଡ଼ା ଭୁଜଙ୍ଗ ଦମ୍ପତି
କେଉଁଠାରେ ପ୍ରେମଭୋଳେ,
ମସ୍ତ ମସ୍ତାଳାର ବକ୍ଷସ୍ଥଳେ ଅବା
ଜମ୍ବୁନଦ ହାର ଦୋଳେ ।
କାହିଁ ବହାସ୍ତୁପେ ଉଡ଼ ଉଡ଼ ଗୃଧ୍ର
ଭୂତଳକୁ ଆସି ଖସି
ଶାର୍ଦ୍ଦୂଳ ନହତ କୃଷ୍ଣସାର ଗଣ୍ଡୁ
ଶୀଘ୍ର ଓଟାରିଇ ବସି ।
କାହିଁ ଖ୍ୟାମ ଲେଲ- ଜହ୍ୱାକୁ ଲମ୍ବାଇ
ମାଡ଼ି ଆସେ ଦାବାନଳ,
ମାଡ଼ ତେଜ ଏଣେ- ତେଣେ ଉଡ଼ୁଥାନ୍ତି
ପକ୍ଷୀଏ ହୋଇ ବିକଳ ।

ତରୁଲତା ପଦେ ଆଶ୍ରିତ ପ୍ରାଣୀଏ
ପଳାନ୍ତି ପରାଣଭୟେ
ହିଂସା ଦ୍ୱେଷ ଘୃଣ୍ଡ କରି ଘୋର ରଡ଼
ନ ଅବୈଁ ପୃଷ୍ଠ ଅଥୟେ ।
କେତେ କେତେ ପ୍ରାଣୀ ଅର୍ଦ୍ଧଦଗ୍ଧ ଦେହେ
ହେଉଥାନ୍ତି ଛଟପଟ
କେତେ ଅବା ସେହି ବିରାଟ ଗର୍ଭରେ
ପଡ଼ି ବସ୍ମରନ୍ତି କଷ୍ଟ ।
ସେ ଭୀଷଣ ଦୃଶ୍ୟ କରି ବିଲୋକନ,
ଏ ଭାବ ଆସଇ ମନେ
ସୃଷ୍ଟିଧ୍ୱଂସକାରୀ ରୁଦ୍ର ପ୍ରତାପ କି
ଆସେ ଖ୍ୟାମ ଜଙ୍ଗଲମାନେ;
ପ୍ରକୃତି ସୁନ୍ଦରୀ ଯାବତ ବିଭବ
ଏକଠାରେ ଠୁଳକରି
କରିଛନ୍ତି ଯହିଁ ସାମ୍ରାଜ୍ୟ ବିସ୍ତାର
ନଜେ ହୋଇ ଅଧୀଶ୍ୱରୀ ।
ସେ ଖ୍ୟାମ ଅରଣ୍ୟେ ଭ୍ରମେ ଇନ୍ଦୁମଣି
ଯିବାକୁ ନ ପାଏ ରାହା,
ବ୍ୟାଧ ଜାଲମୁଖେ କୁରଙ୍ଗୀ ପରାୟେ
ବ୍ୟାକୁଳ ପରାଣେ ଆହା !
କୁଙ୍କୁମ କର୍ପୂର ଯେଉଁ କଳେବର
ହେଉଥିଲା ନିତ୍ୟ ଲାଗି
ଏବେ ସେହି ଅଙ୍ଗେ କେତେ କେତେ କଣ୍ଟା
ବିନ୍ଧି ହୋଇ ଯାଏ ଭାଙ୍ଗି ।

କୁସୁମ ପସଗେ    କ୍ରୀଡ଼ୁଥିଲ ଯେଉଁ
ଉଦ୍ୟାନେ ସଖୀଙ୍କ ସଙ୍ଗେ,
ଏ ଅରଣ୍ୟେ ଆଜ    ଏକାକିନୀ ଭ୍ରମେ
ଧୂଳିଧୂସରିତ ଅଙ୍ଗେ ।
କଣ୍ଟକାବେଷ୍ଟିତ    ପୁରେ ଯେ ଡରଇ
ନିଜ ଛାୟା ଦରଶନେ
ଏବେ ଅହର୍ନିଶ    ଭ୍ରମଇ ଏକାନ୍ତେ
ଶ୍ୱାପଦସଙ୍କୁଳ ବନେ ।
ହଂସତୂଳି ତୂଳରେ    ଶୟନ ଯାହାର
କରୀନ୍ଦ୍ରଦନ୍ତ ପଲଙ୍କେ
ଏବେ ନିଦ୍ରା ସେହି    ଭଜେ କଣ୍ଟକିତ
ଗୁଳ୍ମ ଲତିକାର ଅଙ୍କେ
ତାର ଦୁଃଖେ ଦୁଃଖୀ    ଗିରିଏ ମୁଞ୍ଚନ୍ତି
ଲୋତକ ନିର୍ଝରଛଳେ
କାନନ-କମଳା    କାନ୍ଦ ଉଠନ୍ତି କି
ବିହଙ୍ଗମ କଳକଳେ ?
ବଡ଼ ହେଲେ କିସ    ହେବ ? କର୍ମ ସିନା
ସବୁଠାରୁ ଅଟେ ବଡ଼,
କର୍ମହୀନ ଲୋକ    ନୁହଇ କି ସତେ
ପଷାଣରୁ ବଳି ଜଡ଼ ?
ବୃଥା ଆଶାମଦେ    ମତ୍ତ ହୋଇ ଆହା !
ଏ କଷ୍ଟ ଭୋଗେ ସୁଭୂରୁ,
ଆଶା ସୁଖେ ଦୁଃଖ    ଯାଏ କି କାହାର ?
ଆଶା ତ ଦୁଃଖର ଗୁରୁ ।

ପ୍ରେମଭୋଳେ ଘୁଡ଼ି- ଦେଇ ଉନ୍ମାଦମା
ଅଳୀକ ଆଶା-ତରଣୀ
ପ୍ରତିହିଂସା ଭ୍ରମ- ବାତ୍ୟାବର୍ତ୍ତେ ଘୂରେ
ନ ପାଇ ଶାନ୍ତ-ସରଣୀ ।
ଯହ ଖଣ୍ଡ ଖଣ୍ଡ ଶବଦ ଶୁଣିଲେ
ଚମକ ପଡ଼େ ସଘନେ,
ମତ୍ତ ମାତଙ୍ଗର ବୃଂହିତ ଶ୍ରବଣେ
ପଡ଼ିଯାଏ ଅଚେତନେ ।
ତପ୍ତ ଲୌହ ଯଥା ହୁଏ ହୀନପ୍ରଭ
ପାଇ ଅୟୋଘନ ଘାତ,
ତଥା ଘୋର ଦୁଃଖେ ପ୍ରତିହିଂସା ଯାଇ
ନୈରାଶ୍ୟ ହେଲାଣି ଜାତ ।
ଗଣାବଣା ଏଣୀ ଯର ଏଣୀନେହୀ
ଭ୍ରମଇ ବିଶାଳ ବନେ,
କେବେ ପୂର୍ବମୁଖେ, କେବେ ଉତ୍ତରାସ୍ୟେ,
କେବେ ବା ପଶ୍ଚିମାନନେ ।
ଆହା ! କି ବିବଶା ଖଞ୍ଜରୀଟହୃଶା
ଅବଶା ମଳିନା କୃଶା,
ଦିବସ ପାଣ୍ଡୁର ଚନ୍ଦ୍ରକଳା କି ବା
କୁହେଳିକାମୟୀ ଉଷା ?
କି ଅବା ଦୁଷ୍ମନ୍ତ ବିରହେ ବିଧୁରା
ହେମକୂଟେ ଶକୁନ୍ତଳା ?
ନଳବିରହିଣୀ କାନନଗୁରିଣୀ
ଅବା ଭୈମୀ ସୁକୁନ୍ତଳା ?

ନିର୍ଲକ୍ଷ୍ୟ ଅନ୍ତରେ          ବିକଳ ପରାଣେ
ଭ୍ରମଣ କରେ ସୁନ୍ଦରୀ,
ଶାନ୍ତ ସହଚରୀ          ମୂର୍ଚ୍ଛା ରହିଥାନ୍ତି
ପଦେ ପଦେ ଅନୁସରି ।
ଦୁଃଖାବେଗ ବେଳେ          ଧରି ତାଙ୍କୁ କୋଳେ
ସାନ୍ତ୍ୱନା ଦିଅନ୍ତି କ୍ଷଣେ,
ଭାଙ୍ଗିଯାଏ ଶାନ୍ତି          ଆସନ୍ତେ ଚେତନା
ମୃଦୁ ମନ୍ଦ ସମୀରଣେ ।
କୁମ୍ଭକାର ଚକ୍ର          ପ୍ରାୟେ ଏହିପରି
ଭ୍ରମୁ ଭ୍ରମୁ ସେ ବିପିନେ,
କେତେ ଦିନେ ଯାଇ          ଉପନୀତ ହେଲେ
ଜହ୍ନୁ ତନୟା ପୁଳିନେ ।
ଅସ୍ତ ଯାଇଥିଲେ          କମଳ-ବାନ୍ଧବ
ଆସୁଥିଲେ ଓହ୍ଲାଇ କି,
କଳା ବେଶ ଧରି          ପ୍ରଭାବ ବିସ୍ତାରି
ରଜନୀ-ରାଣୀ ମସ୍ତକ ।
ପନ୍ତି ପନ୍ତି ହୋଇ          ତାରକା ପଙ୍କତି
ଉଇଁ ସୁନୀଳ ଅମ୍ବରେ,
ନିଜ ନିଜ ଶୋଭା          ଦେଖୁଥିଲେ ଅବା
ସୁରେଶ୍ୱରୀ କଳେବରେ ।
କଳକଳ ନାଦେ          ବହି ଯାଉଥିଲେ
ସିନ୍ଧୁମୁଖେ କଲ୍ଲୋଳିନୀ,
ବସୁଧା ଶୃଙ୍ଗାର—          ହାରସ୍ୱରୂପିଣୀ
ଦେବୀ ପତିତୋଦ୍ଧାରିଣୀ ।

ଦିଶୁଥିଲେ ଶୋଭା ପାତକ-ପଙ୍କରେ
ସୁକୃତ ସରଣୀ ମତ,
ବେନ ଘୋର ଘନ ଅନ୍ଧକାର ବନ
ମଧ୍ୟେ ବନ୍ଧୁ ସ୍ରୋତସ୍ୱିନୀ ।
ଅନ୍ଧକାରମୟୀ ନିଶୀଥିନୀରେ ସେ
ଭୀଷଣ ବିଜନ ସ୍ଥାନେ,
ଭବ ଭଙ୍ଗୁରତା ଜାହ୍ନବୀ ଗାୟନ
କରୁଥିଲେ କଲତାନେ ।
ଗଙ୍ଗା ଦରଶନେ ଇନ୍ଦୁମତୀ ହୃଦୁ
ଉଛୁଳିଲା ଶୋକରାଶି,
ସ୍ମୃତିପଟେ ନାଚି- ଗଲା ସବୁ କଥା
ଗୋଟି ଗୋଟି ହୋଇ ଆସି ।
ଗଙ୍ଗା ଗର୍ଭେ ଦୈତ୍ୟ ଭୀଷଣ ସଂଗ୍ରାମ
ସଖୀ ସହ ପଳାୟନ,
କାନନେ ଗୁପତ କାଳକେତୁ କୃତ
ଘନ ଘନ ଉତ୍ପୀଡ଼ନ,
ଯୁବରାଜଙ୍କର ଅଭୟ ପ୍ରଦାନ
ଅଭୟଦ ମନ୍ତ୍ର ବାଣୀ,
ଲାବଣ୍ୟ ମୋହନ ହେମଗୌର ଅଙ୍ଗେ
ଅଦ୍ଭୁତ ବୀରତ୍ୱ ଠାଣି,
ମୂର୍ଚ୍ଛାଅନ୍ତେ ସଂଜ୍ଞା- ଲଭେ ଦରଶନ
ସେ ଖେଦଗମ୍ଭୀର ମୁଖ,
ମଧୁ ସମ୍ଭାଷଣେ ଫୁଟି ବାହାରିଲା
ହୃଦୟରୁ ଯେତେ ଦୁଃଖ ।

ନୈରାଶ୍ୟ ଅନଳେ ଦଗ୍ଧ ହୋଇଥିବା
ଆଶା-ପ୍ରଣୟ ବଲ୍ଲରୀ,
ଏ ଆଦ୍ୟ ଯାବତ ଦୁଃଖ ଆସି ତାର
ହୃଦୟେ ଗଲା ସଞ୍ଚରି ।
ଚନ୍ଦ୍ରାଗ୍ନି ପ୍ରାବଲ୍ୟେ ରୁଦ୍ଧ ଶୋକୋଚ୍ଛ୍ୱାସ
ହେଲା ଅତି ଉତ୍ତରଳ,
ପ୍ରତିମା ସଦୃଶ ଅବଶେ ବରାଙ୍ଗୀ
ରହିଲା ହୋଇ ନିଶ୍ଚଳ ।
କ୍ଷୀରୋଦେ କ୍ଷୀରୋଦ— ସମ୍ଭବା ପ୍ରାଏ ସେ
କାରୁଣ୍ୟ ପ୍ରତିମା ଛବି
ଗଙ୍ଗାଗର୍ଭେ ଦେଖି- ଥିଲେ ଦ୍ରବୀଭୂତ
ହୋଇ ଯାଇଥାନ୍ତା ପବି ।
ଝିଲ୍ଲୀ ଝଙ୍କାରରେ ଆମ୍ରବନ୍ଧୁ ତରୁ
ଉଠି ବଳାହକକେଶୀ
ଗଦ୍‌ଗଦ ବଚନେ କହେ ଜାହ୍ନବୀଙ୍କି
କପାଳେ କର ନିବେଶି—
"ଏ ମୋର ଜୀବନ କର ଗୋ ଗ୍ରହଣ
ଜୀବନରୂପିଣୀ ଗଙ୍ଗେ !
ସକଳ ଯନ୍ତ୍ରଣା ସକଳ ଲାଞ୍ଛନା
ଲୁଚିଯାଉ ତୋର ଅଙ୍ଗେ ।
ସର୍ବ ଜୀବେ ସମ— ସାନ୍ତ୍ୱନା ଦାୟିନୀ !
ସର୍ବପାପବିନାଶିନୀ !
ଦୁଃଖିନୀଙ୍କ ଶାନ୍ତି- ମୟୀ ଅଙ୍କେ ନିଅ
ହରମୌଳି-ନିବାସିନୀ !"

ଏତେ କହି ବାଳୀ ଊର୍ଦ୍ଧ୍ୱେ କର ତୋଳି
ପତନ-ଉନ୍ମୁଖ ବେଳେ
ଶତ-ଚନ୍ଦ୍ରପ୍ରଭା ବିକାଶି ତରଙ୍ଗ
ଉଠି ମାଡ଼ିଗଲା ବେଳେ ✻ ।
ଆବିର୍ଭୂତା ହେଲେ ଦିବ୍ୟ ନାରୀମୂର୍ତ୍ତି
ସହସ୍ର ଚନ୍ଦ୍ରମା ଜିତି
ବଦନମଣ୍ଡଳ- ପ୍ରଭାରେ ଚୌଦିଗେ
ବିକିରଣ କରି କାନ୍ତି;
ଶ୍ରୀଅଙ୍ଗରୁ ଦିବ୍ୟ ସୌରଭ ଚହଟି
ମହକି ଉଠୁଛି ବନେ
ସେ ସୌରଭଲୁବ୍ଧ ଅଳିଏ କି ବେଢ଼ି
ଅଛନ୍ତି ଅଳକଛଳେ ?
ଶତଦଳେ ହୋଇ ମଣ୍ଡିତ ସୁନୀଳ-
କୁଞ୍ଚିତ ଭ୍ରମର କେଶ
ତରଣୀତନୟା ତରଙ୍ଗ ପରାଏ
ଲୋଟୁଅଛି ପୃଷ୍ଠଦେଶ ।
ସ୍ୱର୍ଗୀୟ ବସନ— ଭୂଷଣଭୂଷିତା
ଜ୍ୟୋତିର୍ମୟୀ ବେନି କରେ
ଆଲିଙ୍ଗନ କରି ଧରିଲେ ପୃଷ୍ଠରୁ
ଇନ୍ଦୁମଣ୍ଡଳ ବକ୍ଷରେ ।
କୁନ୍ଦପ୍ରଭାନନ୍ଦୀ ମୟୂଖମାଳିନୀ
ରୂପସୀବକ୍ଷେ ସୁନ୍ଦରୀ

✻ ବେଳେ—ବେଳା ପ୍ରଦେଶରେ

ଝଶିଲେ ରଜତ          ଅମ୍ବୁଜ ଗରଭେ
ସୁବର୍ଣ୍ଣ କେଶର ପରି ।
ଅବା ମହୋଜ୍ଜ୍ୱଳ          ବଧୂ ପଶଧିରେ
ଝଲସିଲେ ସୌଦାମିନୀ
ଊଷା ସୁନ୍ଦରୀଙ୍କି          କି ଅବା ବେଷ୍ଟନ
କଲେ ଶ୍ୱେତ କାଦମ୍ବିନୀ ।
ଚଣ୍ଡ ଅଂଶୁମାଳି          ପ୍ରଚଣ୍ଡ କିରଣେ
ତାପିତା କୁମୁଦମାନ
ଦେଖି ମ୍ରିୟମାଣା          ଅବା ଆଶ୍ୱାସନା
କରେ ଚନ୍ଦ୍ରିକା ଧନ୍ୟା କି ?
ତାରକା ନୟନେ          ଦେଖନ୍ତି ଏ ଦୃଶ୍ୟ
ଅନନ୍ତ ନଭୋମଣ୍ଡଳେ
ତ୍ରିଦିବବିଳାସୀ          ଅମରଙ୍କ ସଙ୍ଗେ
ଅମର୍ତ୍ତ୍ୟେ କୁତୂହଳେ ।
ଜ୍ୟୋତିର୍ମୟ ଜ୍ୟୋତି-          ରିଙ୍ଗଣ ନୟନେ
ଦେଖନ୍ତି ଉଭୟ ଷରେ
ହୋଇ ଆଚମ୍ବିତ          ବଲ୍ଲରୀ ବେଷ୍ଟିତ
ବନସ୍ପତିଗଣ ସ୍ଥିରେ ।
ସେ ଦିବ୍ୟ ସୌରଭ,          ସେ ଦିବ୍ୟ ଗୌରବ
ଦିବ୍ୟ ଶୀତଳତା ଲଭି
ବିଦଗ୍ଧା କୁମାରୀ          ସ୍ନିଗ୍ଧ ପ୍ରାଣେ ମୁଗ୍ଧେ
ରହିଁଲା ନ ଯାଇ ଦୂର ।
ପୁଛିଲା କାତରେ          "କିଏ ତୁମ୍ଭେ ମାତଃ !
କାରୁଣ୍ୟଶୈତଲ୍ୟମୟି !

କେଉଁଠାରୁ ଆସି  କପାଁ ମୋତେ କୋଳେ
ଧରିଅଛ ଦୟା ବନ୍ଧୁ ?
ବଡ଼ ଅଭାଗିନୀ  ଅଟେ ମୁଁ, ଜନନି !
ନାହିଁ ମୋ ଜୀବନେ ଶାନ୍ତି,
ନ କର ବାରଣ  ତେଜିବି ପରାଣ
ଘୁଞ୍ଚିବ ସବୁ ଅଶାନ୍ତି ।”
ଶ୍ରୀମୁଖୁ ତାଙ୍କର  ନିଃସରିଲା ଧୀରେ
ସୁଧାନିସ୍ୟନ୍ଦିନୀ ବାଣୀ,
ମୃଦୁଳେ ମଧୁରେ  ଝଙ୍କାରିଲେ ଅବା
ବୀଣାତନ୍ତ୍ରେ ବୀଣାପାଣି ?
“ଅଟେ ମୁହିଁ ବତ୍ସେ !  ଶାନ୍ତିପ୍ରଦାୟିନୀ
ଦ୍ରବମୟୀ ସୁରେଶ୍ୱରୀ,
ତୋର ତପ୍ତ ପ୍ରାଣେ  ସାନ୍ତ୍ୱନା ଦେବାକୁ
ଆସିଛି ବିଗ୍ରହ ଧରି ।
କହ ଇନ୍ଦୁମତି !  ପାଗଳିନୀ ପରି
ତୋର ଏ କି ଆଚରଣ ?
ଅମୂଲ୍ୟ ଜୀବନ  କାହିଁପାଇଁ ଆଜ
କରୁଅଛୁ ବିସର୍ଜନ ?
ପୀୟୂଷ ସେଚନ  ହୋଇଗଲା ପ୍ରାଣେ
ସିନ୍ଧୁରାଜକୁମାରୀର,
ଭକ୍ତିଭରେ କର  ଯୋରକତ କରି
କହେ ସେ କରୁଣ ଗିର—
“କିବା ପ୍ରୟୋଜନ  ଏ ପ୍ରାଣେ ? ଜନନି !
କି ଅଛି ମୋର ସଂସାରେ ?

ଯା ପଦେ ପରାଣ କଲି ସମର୍ପଣ
ସେ ତ ନ ଗୃହିଁଲେ ବାରେ ।
ସର୍ବଗୁଣାଧାର ସର୍ବାଙ୍ଗ ସୁନ୍ଦର
କରୁଣାକର କୁମାର
ଶାଗ୍ଭମୂରେ ଲଜ୍ୟା, ମାନ କରି ତେଜ୍ୟା
ଫେଡ଼ ଦେଲି ହୃଦଦ୍ୱାର ।
ନ ହେଲ କରୁଣା, କଲେ ଅକରୁଣା
ନ ରଖିଲେ ଦାସୀ ପଦେ,
ଭବ-ବନ୍ଧନରେ ଏ ପରାଣ ଆଜି
ରଖିବ କେଉଁ ଆସ୍ପଦେ * ?"
ସଖି କେ ଜାହ୍ନବୀ କହନ୍ତି "ଅଳୀକ
ବାସନାରେ ରଖି ଲକ୍ଷ୍ୟ,
ଅମୂଲ୍ୟ ପଦାର୍ଥ ପ୍ରେମକୁ ଇଚ୍ଛୁ ତୁ
କରିବାକୁ ବନମକ୍ଷ୍ୟ ।
ମହୋଜ୍ଜ୍ୱଳ ରତ୍ନ ଅଟେ ଯେଉଁ ପ୍ରେମ
ମୁକ୍ତି-ପଥ-ପ୍ରଦର୍ଶକ,
ବୃଥା ଭ୍ରମେ ତାକୁ ମଳିନ କରୁଛୁ
ଲଗାଇ ଲାଳସା-ପଙ୍କ ।
ସାତ୍ତ୍ୱିକ ଗୁଣରୁ ସାଧୁହୃଦେ ଉଠେ
ବିଶୁଦ୍ଧ ପ୍ରେମ ମା ! ଜାଗି
ଯା ପ୍ରଭାରେ ଯାଏ ଭବର ଯାବତ
ଭଯ୍ଭ୍ରାନ୍ତି ଭେଦ ଭାଙ୍ଗି ।

---

* କାର୍ଯ୍ୟେ

ଶତ ପ୍ରତିଷେଧ ଲଙ୍ଘି ଅନାସକ୍ତେ
କରେ କର୍ତ୍ତବ୍ୟ ପାଳନ
ବିକା କଣା ତାର କିବା ଅଛି ? ସେ କି
ଅଟେ ସୌଦାଗର ଧନ ?
ଯାହା'ଠାରେ ପ୍ରୀତି ହୁଅଇ ଯାହାର
କାୟ-ମନୋବାକ୍ୟ-ପ୍ରାଣେ
ତାହାଠାରେ ତାଳ- ଦିଏ ସବୁ ସ୍ନେହ
ପ୍ରତିଦାନ ସେ ନ ଜାଣେ ।
ଦେଖ ପ୍ରେମୋଲ୍ଲାସେ କମଳିନୀ ଥାଏ
ରବି ପଥ ଅନୁସରି,
ମାତ୍ର ରବି କେବେ ଆସନ୍ତି କି ତାକୁ
ସ୍ନେହ ସମ୍ଭାଷଣ କରି ?
ବିଧୁ ଦରଶନେ କୁମୁଦିନୀ ମୁଦେ
ବିତରଣି କରେ ବାସ,
ଥାଏ କି ତାହାର ବିଧୁଠାରୁ ସ୍ନେହ
ଲଭିବାକୁ ପ୍ରତିଆଶ ?
ଗିରିବର କୋଳୁ ଉତ୍କଳ ତଟିନୀ
ପ୍ରେମେ ହୋଇ ଉଦବିଗ୍ନ
ବିନା ଆବାହନେ ଧାଏଁ ସିନ୍ଧୁମୁଖେ
ଲଙ୍ଘି ସବୁ ବାଧାବିଘ୍ନ ।
ତୁ ଯେବେ କୁମାରେ କରିଛୁ ନିର୍ମଳେ
ମନ ପ୍ରାଣ ସମର୍ପଣ,
ସେହି ମନ ପ୍ରାଣେ ଅଛି କି ତୋହର
ଆଉ ଅଧିକାରି ପଣ ?

ତାର ମନ ପ୍ରାଣ     ତାହାର କାର୍ଯ୍ୟରେ
ହେବ ସିନା ଉତ୍ସର୍ଗିତ
ଅନ୍ୟ କାର୍ଯ୍ୟେ ତାକୁ     ନିଯୋଗ ତୁ କଲେ
ପାପେ ହେବୁ ନିମଜ୍ଜିତ ।
ନାରୀର କର୍ତ୍ତବ୍ୟ     ବସୁମତୀ ପ୍ରାଏ
ସମସ୍ତ କଷଣ ସହିବ
ପୁରୁଷ ମଙ୍ଗଳ—     କାର୍ଯ୍ୟେ ହେବ ବ୍ରତୀ
ଛାୟା ପରି ପାଶେ ରହିବ ।”
ଜାହ୍ନବୀ ବଚନେ     ଇନ୍ଦୁମତୀ ମନୁ
ତୁଟିଲା କାମନା-ମଳ,
ହଟିଗଲା ମୋହ—     ଅନ୍ଧାର, ଫିଟିଲା
ପ୍ରେମର ପ୍ରଭା ବିମଳ;
ନୈରାଶ୍ୟ-ଦଗଧ     ଜୀବନରେ ଲଭି
ପ୍ରେମ ଉପଦେଶାମୃତ,
ମନ୍ତ୍ରମୁଗ୍‌ଧ ଫଣୀ     ପ୍ରାଏ ବରାଙ୍ଗନା
ହୋଇଗଲା ସ୍ତମ୍ଭୀଭୂତ ।
ସଧୀରେ କହଇ     “ଶୁଣ ଦୟାମୟି !
ପ୍ରବଳପ୍ରତାପାନ୍ୱିତ
ଯୁବରାଜଙ୍କର     କେଉଁ ଘଟନାରେ
କପଟ ସାଧିବ ବ୍ରତ ?
ନାରୀ ହୃଦ, ମୋର     ଅଟନ୍ତି ଦୁର୍ବଳ,
କାହୁଁ ପାଇବ ସେ ଶକ୍ତି ?
କପଟ ପାଶରେ     ରହିବି ତାଙ୍କର
ଶୁଭ କାର୍ଯ୍ୟେ ହୋଇ ବ୍ରତୀ ?”

ବୋଇଲେ ଜାହ୍ନବୀ କରିବା ପାଇଁକି
ମହୀଭାର ନିବାରଣ
ଜନ୍ମିଥିଲେ ଭବେ ଦେବକୀ ଗରଭେ
ନରରୂପେ ନାରାୟଣ ।
ପୂର୍ଣ୍ଣ ହେଲା ତାଙ୍କ ଅବତାର କାର୍ଯ୍ୟ,
ହେବ ଲୀଳା ଅବସାନ,
ସକଳ ଭକତ ଉଦ୍ଧାରି ଏ ଭବୁ
କରିବେ ମହାପ୍ରସ୍ଥାନ ।
ଅଶ୍ୱମେଧ ଯଜ୍ଞ ଆରମ୍ଭି ଅଛନ୍ତି
ଧର୍ମରାଜ ଯୁଧିଷ୍ଠିର,
ଯଜ୍ଞାଶ୍ୱ ତାଙ୍କର କରୁଛି ଭ୍ରମଣ
ଜୟପତ୍ର ଧରି ଶିର,
ଅଶ୍ୱମେଧ ଛଳେ ଭକ୍ତମେଧ କାର୍ଯ୍ୟ
କରିବେ ହରି ସାଧନ,
ଅଚିରେ କରିବ ଭଦ୍ରାବତୀ ପୁରେ
ସେହି ଅଶ୍ୱ ଆଗମନ ।
କୃଷ୍ଣ ଦରଶନ— ଆଶାରେ ସେ ଅଶ୍ୱ
ରଖାଇବେ ହଂସଧ୍ୱଜ,
କରିବେ ସମର ପାର୍ଥ ବୃକୋଦର
ସଙ୍ଗେ ହୋଇ ନୃପାତ୍ମଜ ।
ଆଉ ଏକ କଥା ଶୁଣ ହନୁମନ୍ତ !
ଦୁରନ୍ତର କାଳକେତୁ
କୁମାରେ ନିଧନ କରିବାକୁ ପଣ
କରିଛି ତୋହର ହେତୁ ।

ତୋ ରୂପଲୋଲୁପ କାମାନ୍ଧ ଭ୍ରମୁଛି
କପଟ ବେଶକୁ ଧରି,
ଖୋଜୁଛି ସୁଯୋଗ କୁମାର ଜୀବନ
ସଂହାରିବ କେଉଁପରି ।
ଘୋଟୁଛି ରୌଦ୍ରଗୁଁ ବିପଦ-ଅନ୍ଧାର
ଅଲକ୍ଷିତେ ସୁଧନ୍ୱାର,
କାଳରୂପୀ କୃଷ୍ଣ- ଙ୍କର ଗୂଢ଼ମନ୍ତ୍ର
ହେବ ଜର୍ଣ୍ଣରେ ପ୍ରସ୍ତର,
ସେ ଗୁପ୍ତ ରହସ୍ୟ ଦେଖିବା ପାଇଁ କି
ଛଦ୍ମବେଶେ ଦିଗବାସ
କରନ୍ତି ଭ୍ରମଣ ତାଙ୍କ ଆଦେଶରେ
ଆସିଛି ମୁଁ ତୋର ପାଶ,
ନିଅ ବତ୍ସେ ! ଏହି ଅକ୍ଷୟ କବଚ,
ନିଅ ଏହି ଧନୁଶର;
ପୁରୁଷ ବେଶରେ ଦେହରକ୍ଷୀ ରୂପେ
ରହିବୁ ପାଶେ ତାଙ୍କର ।
ପରମ ବୈଷ୍ଣବୀ ଶକ୍ତିରେ କୁମାର
ଅଟେ ମହାଶକ୍ତିମାନ,
ଭଗବତୀ ଦତ୍ତ ଏ ଶକତି ଆଜ
କଲି ମୁଁ ତୋତେ ପ୍ରଦାନ,
ଏହି ଶକ୍ତିବଳେ ହେବୁ ଶକ୍ତିମତୀ,
ଛଦ୍ମ ବେଶ ତୋ'ର ଜ୍ଞାତ
ନ ହେବ କାହାକୁ, ସ୍ୱଇଚ୍ଛା ବିନୁନେ
ନ ହେବୁ ନିଧନ ପ୍ରାପ୍ତ ।

ଯେନ ମହାଶକ୍ତି ବଳେ ସୁରକ୍ଷିତ
ହେଲ ତୁମ୍ଭେ ଯେନ ଜନ,
ଅଲକ୍ଷିତେ ମୁହିଁ ତୁମ୍ଭ ନିକଟରେ
ରହିଥିବି ଅନୁକ୍ଷଣ ।
ଦେଖିବି କିପରି ଅର୍ଜ୍ଜୁନ ଗୌରବ
ରକ୍ଷା କରିବାକୁ ହରି
ଏହି ମହାଶକ୍ତି ଯୁଗଳ କୌଶଳେ
ନେବେ ତୁମ୍ଭଠାରୁ ହରି ।
ଯାଅ କର୍ମ ପଥେ ନିଷ୍କାମ ଅନ୍ତରେ
ମନକୁ ସଂଯତ କରି,
ଦେଖାଅ ଜଗତେ ପ୍ରେମବଳେ ହୁଏ
ବିଶ୍ୱବିଜୟ କିପରି ?
ଅନନ୍ତ ମାନବେ ଅନନ୍ତ କଣ୍ଠରେ
ଗାଆନ୍ତୁ ପ୍ରେମର ଜୟ,
ନିଷ୍କାମ ପ୍ରେମର ଦିବ୍ୟ ପ୍ରବାହରେ
ହେଉ ବିଶ୍ୱ ପ୍ରେମମୟ ;
ଧର୍ମନାବେ ରହି ଭବାର୍ଣ୍ଣବୁଁ କର
ଯଶୋରତ୍ନ ଉତ୍ତୋଳନ
ପ୍ରିୟତମ ପଦେ ଉପହାର ଦେଇ
କର କୃତାର୍ଥ ଜୀବନ ।
ଫୁଟୁ ତୋ ସ୍କରଦ୍ୟ କୁସୁମ ଖାରଣି
ଭାରତ-ନନ୍ଦନ-ବନେ
ଉଠୁ ତା ମନୋଜ୍ଞ ସୌରଭ ଚହଟି
ଅନନ୍ତ ମାନବ ମନେ ।

ବୁଝୁଁ ତୋ ବୀରତ୍ୱ—  ରସେ ବୀର-ବର-
ଣୀୟା ନାରୀଙ୍କର ମନ,
ଉଡ଼ୁ ତୋ ପ୍ରେମର  ବୈଜୟନ୍ତୀ ରଣ-
ଘନବର୍ମେ ଘନ ଘନ ।
ଯେଉଁ ପ୍ରତିହିଂସା  ସାଧନାରେ ବତ୍ସେ !
ସହିଲୁ କଷଣ ଘୋର,
ହେବ ଏ ସମରେ  କୁମାରଙ୍କ କରେ
ସେ ପ୍ରତିଜ୍ଞା ପୂର୍ଣ୍ଣ ତୋର ।”
ଏତେ କହି ଦେବୀ  ହେଲେ ଅନ୍ତର୍ହିତ
ସହସା ତଟିନୀ ନୀରେ;
ବିସ୍ମୟବିମୁଗ୍ଧେ  ଅନିମେଷ ନେତ୍ରେ
ଦେଖେ ଇନ୍ଦୁମତୀ ତୀରେ ।
ଦେଖୁ ଦେଖୁ ବାଳୀ  ପଡ଼ିଗଲା ତଳ
ଶୁଭ୍ର ସୈକତ ଉପରେ
ମୂର୍ଚ୍ଛା ସଖୀ ଅଙ୍କେ  କି ଅବା ରହିଲା
ନିଦ୍ରା ଶାନ୍ତ ନିଳୟରେ ।
ଉଷା ଆଗମନେ  ବିହଙ୍ଗ କୂଜନ
ଶ୍ରବଣେ ଉଠି ସ[illegible]ୀରେ
ଦେବୀ ଉପଦେଶ  ସୁମରିଣ ମନେ
ସ୍ନାନ କଲା ଗଙ୍ଗାନୀରେ;
ଅଙ୍ଗ ଆଭରଣ  କରି ବିସର୍ଜନ
ପବିତ୍ର ଜାହ୍ନବୀ ଜଳେ,
ଦେବୀଦତ୍ତ ବାସ-  ଭୂଷାରେ-ରଚିଲା
ପୁଂସ ବେଶ କୁତୂହଳେ,

ସୂର୍ଯ୍ୟ-କର ସ୍ପର୍ଶେ ସୂର୍ଯ୍ୟକାନ୍ତ ପରି
ତେଜ ଝଟକ ଉଠିଲା,
ଅଦ୍ଭୁତେ ଖାଉଛୁ, ଉତ୍ସାହ, ପ୍ରାକ୍ରମ,
ଧୈର୍ଯ୍ୟ ହୃଦେ ସଞ୍ଚରିଲା ।
ରମଣୀର ରମ- ଣୀୟ ସୌନ୍ଦର୍ଯ୍ୟ
ବୀରତ୍ୱ ପ୍ରତିଭାପୂର୍ଣ୍ଣ
ହୋଇ, ବ୍ରଜାନଳ- ପୂର୍ଣ୍ଣ ତଡ଼ିଲ୍ଲତା
ଶୋଭା ଦର୍ପ କଲା ଚୂର୍ଣ୍ଣ ।
ଯୁବରାଜଙ୍କର ପୁନର୍ଦ୍ଦରଶନ
ଆଶା ସ୍ଥାପି ମନୋରଥେ
ଜାହ୍ନବୀ ପଯୂରେ ନମି ଭକ୍ତିଭରେ
ଗମିଲା ଗନ୍ତବ୍ୟ ପଥେ ।

## ଚତୁର୍ଥ ସର୍ଗ

ଅତି ମନୋହର ବିଶଦ ବିମଳ
ରୁଚିର ଶରଦ କାଳ,
ନିର୍ମଳ ଧରଣୀ, ନିର୍ମଳ ସରଣୀ,
ନିର୍ମଳ ତଟିନୀମାଳ;
କାଦମ୍ବିନୀମୁକ୍ତ ଆକାଶ ନିର୍ମଳ
ନିର୍ମଳ ରବି କିରଣ,
ନିର୍ମଳ ସରସୀ ପଲ୍ୱଳ ତଡ଼ାଗ
ନିର୍ମଳ ଦିଗ୍‌ବଧୂଗଣ ।

ସୁଶ୍ୟାମଳ ଧାନ୍ୟ- କେଦାର ସୁନ୍ଦର
ବକ୍ଷ୍ୱଣ ଫୁଲ୍ଲ କହ୍ଲାର,
କୁସୁମିତ ମାଳ ସୁର୍ଣ୍ଣୀନ ଦୁକୂଳ
ଅଛେ କି ସେ ବସୁଧାର ?
ସମୀରଣଲୋଳ ସରସୀ ସଲିଳ
ଲହରୀକୁ ଚାରିକତ
ଶୁଭ୍ର ଅଙ୍ଗେ କର ବିହରନ୍ତ ରଙ୍ଗେ
ରାଜହଂସ ଅଗଣିତ;
ଲୁଟି କରୁଅଛୁ ସୌରଭ ଭଣ୍ଡାର
ପ୍ରେମେ ହୋଇ ଉନ୍ମାଦିନୀ
ଦିନକର ଖର- କରେ ପ୍ରଫୁଲ୍ଲିତା
ଫୁଲରାଣୀ କମଳିନୀ ।
ପାନ୍ଥ ହୃଦେ ଖ୍ରାନ୍ତି ହିଏ ଦୂରୁ ଚାରି
କାନନେ ଅଳି ଝଙ୍କାର
ଦର୍ଶି ଦନ୍ତ-ହାସ ମଦନର କି ସେ
କୁସୁମ ଧନୁ ଟଙ୍କାର ।
ନବଡ଼ ମାରନ୍ଦ୍ର— କୀଚକ କୁଞ୍ଜରୁ
ଯାମଘୋଷୀ ଘନ ସ୍ୱର
ଡାହୁକର ଉଠି ହିଗ ନିନାଦିତ
କରଇ ଥରକୁ ଥର ।
କେବେ କେବେ ବନୁ ଉଠି ସୁମଧୁର
ସାର ସଙ୍ଗୀତଲହରୀ
ଢାଳି ଦିଏ ପ୍ରାଣେ ବିମଳ ଆନନ୍ଦ
ଝଙ୍କାରିତ ବୀଣା ପରି ।

କଣ୍ଟକିତ ଦୂର୍ବେ      ସୌରଭ ପସରା
କରେ କିଏ ଉଦ୍‌ଘାଟନ
ବନ୍ଧୁ ଆଣି ଧୀରେ      ଜନପଦେ ତାହା
ପ୍ରଚ୍ଛରଇ ସମୀରଣ;
[illegible] ଖଟରେ      ବଟ ଦ୍ରୁମ ଶିରେ
ଟେକିଛି ରଜତ ଛତା
ପ୍ରଫୁଲ୍ଲେ ସ୍ଫଟିକ—      କୁସୁମଧାରିଣୀ
ସୁରଭି ମାଳତୀ ଲତା ।
ଯାର ଭୂମିଲମ୍ବି—      ଶାଖାରେ ଗୋପାଳ-
ବାଳକେ ମୁରଲୀ ବାଇ
ଦୋହଲ ଦୋହଲ      ଗୀତ ବୋଲ ବୋଲ
ପଠାରେ ଚରାନ୍ତି ଗାଈ ।
ବକଶିତ ଶୁଭ୍ର      କାଶକୁସୁମରେ
ଧବଳ ତଟିନୀ ପଠା,
ଅବା ସେ ଶରତ      ବୈଭବେ ଗର୍ବିତା
ଧରଣୀର ହାସଛଟା ?
ମନ୍ତ୍ରିଦ୍ଧଏ କେତେ      କେତେ ନୀଳ ନଭଃ
ରବ ଅଗ୍ରେ ଶଙ୍ଖଧନୁ
ଜ୍ୟୋତ୍ସ୍ନାମୟୂ ସପ୍ତ-      ବର୍ଣ୍ଣେ ସୁରଞ୍ଜିତ
କର ସୁବିଶାଳ ତନୁ ।
ଦକ୍ଷିଣାଶାବଧୂ      ଅଳକା ମୌକ୍ତିକ
ଅଗସ୍ତ୍ୟଙ୍କ ଆଗମନେ
ଶରତ ସୁନ୍ଦରୀ      ପ୍ରକୃତ ମାଧୁରୀ
ବଢ଼ାଇ ଅଛି ଯତନେ ।

ଦିବ୍ୟ ଜ୍ୟୋତିଷ୍ମତୀ ସୁବିମଳ କାନ୍ତି
ଋତୁଙ୍କ କଣ୍ଠ ଭୂଷା
ଶରତ କାଳରେ ମଧୁର ଯାମିନୀ,
ମଧୁର ପ୍ରଦୋଷ ଉଷା ।
ବିଜେ କରିଛନ୍ତି ପ୍ରଦୋଷେ ଏ କାଳେ
ପ୍ରଭାବତୀ ସଙ୍ଗତରେ
ପ୍ରମୋଦ ଉଦ୍ୟାନେ ଯୁବରାଜ ଦିନେ
ମାଧବୀ ମଣ୍ଡପ ପରେ
କିଶୋର କିଶୋରୀ ଯୁଗଳେ ମଣ୍ଡପ
ଦିଶେ କେଡ଼େ ମନୋହର
ରମ୍ୟ ସ୍ଥାନ ଅବା ଦେଖି ଆସିଛନ୍ତି
ରୋହିଣୀ ପୀୟୂଷକର ?
ନନ୍ଦନ କାନନେ ଅବା ଶଚୀ, ଶଚୀ-
କାନ୍ତ ସହସ୍ରଲୋଚନ ?
କିବା ବୃନ୍ଦାବନେ ବୃଷଭାନୁସୁତା
ରାଧା, ବ୍ରଜେନ୍ଦ୍ରନନ୍ଦନ ?
ନୃପଜ ଦମ୍ପତି ଦର୍ଶନେ ସୁଷମା-
ମୟୀ କାଦମ୍ବିନୀ ରାଣୀ
ବାରୁଣୀ ଗଗନେ କେତେ କେତେ ଛବି
ଦେଖାଇ ଦେଉଛି ଆଣି ।
ମଧୁରନନାଦୀ ବିହଙ୍ଗମଗଣ
ବସି ମାଢେ଼ ତରୁପରେ
ଉପବନ ପଦେ ଢାଳନ୍ତି କାକଳି
ମନୋଜ୍ଞ ମଧୁରସ୍ୱରେ ।

ସୁନୀଳ ବକଚ — ନସ୍ତୁନମାଳାରେ
ଅପରାଜିତା ରୂପସୀ
ଉଦ୍ୟାନ ବାଡ଼ରେ — ଗୁହିଁଛି ପ୍ରଫୁଲ୍ଲେ
ମନ୍ଦାନିଳେ ହସି ହସି
ହୀରକ କଳିକା — ଧରି ଶେଫାଳିକା
ପ୍ରବାଳ ବୃନ୍ତ ଉପରେ
ନୀଳମଣି ଅଙ୍ଗ — ମଣ୍ଡି ଦେଇ ଅର୍ଦ୍ଧ—
ବିକାଶେ ବାସ ବିତରେ ।
ଚମ୍ପା, ରଙ୍ଗବାଣ, — ସେବତି, କାଞ୍ଚନ,
ସୁଗନ୍ଧରାଜ, ଟଗର
ଗୋଲାପ, ବକୁଳ, — ମାଳତୀ, ମନ୍ଦାର,
କଦମ୍ବ, ନାଗକେଶର,
ଯେ ଯାହା ବିଭବ — ଦେଖାଇ ସୌନ୍ଦର୍ଯ୍ୟ-
ପସରା ଅଛନ୍ତି ଫେଇ
ସୌରଭ ତାଙ୍କର — କରେ ପରସ୍ପର
ସୁମନ୍ଦ ସମୀର ନେଇ ।
ସୁରଭି ସୁମନ — ସୁବାସେ ଉଦ୍ୟାନ
ହେଉଅଛି ଆମୋଦିତ,
ଗୁଞ୍ଜରି ମଧୁପେ — ଭ୍ରମନ୍ତି ଚୌଦିଗେ
ଗନ୍ଧେ ହୋଇ ବିମୋହିତ ।
ଯୁବରାଜ୍ଞୀଙ୍କର — କରତାଳି ନାଦେ
ନାଚି ନାଚି ଉପୁଚ୍ଛରେ
ବସିଛି ଚନ୍ଦ୍ରକୀ — ବର୍ହଶିଖା ଟେକି
କନକ ଯଷ୍ଟି ଉପରେ ।

ସ୍ୱଚ୍ଛ ସୁଗନ୍ଧିର, ନୀଳା-ସରୋବର
ମଣ୍ଡିତ ପଦ୍ମଉତ୍ପଳେ
ଚଉଦିଗେ ତାର ସୋପାନ ବେଷ୍ଟିତ
ସୁନ୍ଦର ଶ୍ୱେତ ଉପଳେ ।
ନୀଳ ଘନେ ଶଶୀ ପରିଧି ପରାଏ
ଦିଶୁଅଛି ମନୋହର
କମଳ-କେଶର ଧୂଳିରେ ସଲିଳ
ହୋଇଛି ପୃଥୁଳତର ।
ବାରି-ବିହଙ୍ଗମେ କରୁଛନ୍ତି କ୍ରୀଡ଼ା
ଲହରୀ-ଦୋଳାରେ ଦୋଳି,
ମୀନ ଲୋଭେ ତୀରେ ବସିଛନ୍ତି ଧୀରେ
ବକ ବକ୍ର ଗ୍ରୀବା ତୋଳି ।
ସ୍ୱର ଉଠୁଅଛି ସରସୀର ଗର୍ଭେ
ବିବିଧ କଳରବରେ,
ପଞ୍ଚଅପ୍ସରା ବା ନୃତ୍ୟ ଗୀତ ବାଦ୍ୟ
କରୁଛନ୍ତି ପଞ୍ଚାପ୍ସରେ ?
ଅମର୍ତ୍ତ୍ୟ ସୁନ୍ଦର ରମ୍ୟ ଉପବନ
ଦେଖି ହୁଏ ମନେ ପ୍ରତେ
ଅଳକାପୁରୁଁ କି ବୈଭ୍ରାଜ ଉଠାଇ
ଆସିଛି ମର୍ତ୍ତ୍ୟକୁ ସତେ ?
ଉଦ୍ୟାନ ଭ୍ରମଣ ଅନ୍ତେ ମଣ୍ଡପରେ
ବସି ଦମ୍ପତି ଯୁଗଳ
ସେବା କରୁଛନ୍ତି ସରସୀ ଶୀକର-
ସମୀରଣ ପରିମଳ ।

ଅଦୂରସ୍ଥ ହର୍ମ୍ମ୍ୟେ ଗାଆନ୍ତି ସଙ୍ଗୀତ
ରମଣୀଏ ବୀଣା ତାନେ
ନବାସିତା ସୀତା— ବଳାପ, କୁମାର
ଶୁଣୁଛନ୍ତି ଏକ ଧ୍ୟାନେ ।
ସ୍ୱର-ଗ୍ରାମ-ମୂର୍ଚ୍ଛ ନାରେ ସୁଧା ଢାଳି
ଦେଉଅଛି ତାଙ୍କ କଣ୍ଠେ
ବନେ ଇନ୍ଦୁମତୀ କାତର ଆହ୍ୱାନ
ଖେଳଯାଉଅଛି ମନେ,
ମାତ୍ର ପତିପ୍ରାଣା ପ୍ରଭାବତୀଙ୍କର
ନାହିଁ ତହିଁ ତିଳେ ଲକ୍ଷ୍ୟ
ପତିମୟ ପ୍ରାଣେ ଆନ ଭାବ କାହିଁ
ଭେଦିବାକୁ ହେବ ଶକ୍ୟ ?
ନବ ପ୍ରଣୟିନୀ ସୁହାଗିନୀ ଧନୀ
ପ୍ରେମଭକ୍ତିବହ୍ନ୍ଲିନୀ
ନ ଜାଣିଲେ ଯେଣୁ ପତିପ୍ରିୟ କାର୍ଯ୍ୟେ
ରତ ଥିଲେ ସୁହାସିନୀ
ସୁବାସ କୁସୁମେ ମନୋହର ହାର
ଗୁନ୍ଥି ମୋଦେ ପ୍ରଭାବତୀ
ଦେବାକୁ ଗଳାରେ ସସ୍ମିତେ ସଲଜ୍ଜେ
ଅନାଇଲେ କାନ୍ତ ପ୍ରତି ।
ଖେଦବଜଡ଼ିତ ଗମ୍ଭୀର ବଦନ
ଦେଖି ପ୍ରାଣପତିଙ୍କର
ବିଷାଦ-ବାରିଦ ଢାଙ୍କିଦେଲା ସ୍ୱଚ୍ଛ-
ଚନ୍ଦ୍ରାନନକୁ ତାଙ୍କର ।

ରବିକରମ୍ଳାନ କୁନ୍ଦେଳକାଞ୍ଚନ,
କମଳମା ପରି ହୋଇ
ପୂଛନ୍ତ କାତରେ ସୁରଭ ସୁମନ-
ହାରକୁ ଭୂତଳେ ଥୋଇ-
"ପ୍ରିୟତମ ଦେବ ! କାହିଁପାଇଁ ତବ
ଶ୍ରୀମୁଖେ ନାହିଁ ହରଷ
ଚନ୍ତାମଗ୍ନ ରହୁ- ଅଛ ଅନୁକ୍ଷଣେ
କବା ଏ ଗୂଢ଼ ରହସ୍ୟ ?
ଶୁଣିବାକୁ ଦାସୀ ନୁହେ କ ଭାଜନ
ତବ ହୃଦଦୁଃଖ କଥା ?
ଏ ବିଷାଦଛବ ନେଖି ସବୁ ଫୁଟି
ଦେଉଛି ମୋ ପ୍ରାଣେ ବ୍ୟଥା ।"
ପରାଣପ୍ରେୟସୀ କାତର ବଚନେ
ଭାଙ୍ଗିଗଲା ଏକାଗ୍ରତା
ଦୀର୍ଘଶ୍ୱାସ ତେଜ ଜଣାଇଲେ ଧୀରେ
ଅନ୍ତରଗୂଢ଼ ବାରତା;
"କ କହିବ ପ୍ରିୟେ ! ସେହି ନଦାରୁଣ
ମରମଭେଦ ସମ୍ବାଦ,
ନ କହେଁ ଶୁଣିଲେ ଜନ୍ମିପାରେ ତବ
କୋମଳ ପ୍ରାଣେ ବିଷାଦ ।"
ଏତେ ବୋଲି ଧୀର କହନ୍ତେ ସ୍ୱବର
ଇନ୍ଦୁମତୀ ସମାଚାର,
ନରୁଦ୍ଦେଶ କଥା ଶୁଣି ପ୍ରଭାବତୀ
କ୍ଷୋଭେ ମଣି ଚମତ୍କାର ।

ବୋଲନ୍ତ ବସ୍ତ୍ରପେ "ସଖୀଗଣେ ଛାଡ଼
କେଉଁ ଗୂଢ଼ ଅଭିଳାଷେ
ନୃପନନ୍ଦନନ୍ଦିନୀ ହୋଇ ଏକାକିନୀ
ପଳାଇଗଲେ ଉଦାସେ ?"
ବୋଇଲେ କୁମାର "ସଖୀଙ୍କ କଥାରୁ
ଏତିକ ପାରିଲି ଜାଣି
କାଲକେଉଦନ୍ତ ଅପମାନ ତାର
ମରମ ଦେଇଛି ହାଣି ।
ପେଷିଲି ଚୌଦିଗେ ଅନୁଚରବୃନ୍ଦ
କରିବାକୁ ଅନ୍ୱେଷଣ
ସ୍ୱଦେଶେ ସଖୀଙ୍କୁ ପଠାଇଲି ତାର
ସଙ୍ଗେ ଦେଇ ସୈନ୍ୟଗଣ;
ଫେରିଲେ ସମସ୍ତ ଦୂତ ଏକେ ଏକେ
ନ ଲଭି ଉଦନ୍ତ ତାର,
ମାତ୍ର ଫେରି ଆସି ନ ଥିଲା ପ୍ରେୟସି !
ଉତ୍ତର ଦିଗରୁ ଚର ।
ଉତ୍ତରାଭିମୁଖୀ ପଦଚିହ୍ନାବଳୀ
ଦେଖି ରାଜପଥେ ତାର
କହିଥିଲି ଦୂତେ ଆଣିଲେ ବାରତା
ଦେବି ବହୁ ପୁରସ୍କାର ।
ତାଠାରୁ ସନ୍ଦେଶ ପାଇବାକୁ ଆଶା
ପୋଷିଥିଲି ମୋ ହୃଦୟେ
କାଲି ପ୍ରାତେ ଫେରି ଆସି ସେହି ଦୂତ
ଜଣାଇଲା ସବିନୟେ;—

"ବନ୍ଧୁ ଦେଶ, ଗିରି, ଗହନ ପ୍ରାନ୍ତର
ଯେ ଦେବ ! କରି ଭ୍ରମଣ
ନୌକାଯୋଗେ ଶେଷେ ଗଙ୍ଗାଗର୍ଭେ ବୁଲି
କରୁଥିଲି ଅନ୍ୱେଷଣ;
ଦେଖିଲି ଖ୍ରିଷଣ ଅରଣ୍ୟ ପ୍ରାନ୍ତରେ
ଜାହ୍ନବୀ ତଟସୈକତେ
ରତନ ବସନ ରତନ ଭୂଷଣ
ପଡ଼ିଅଛି ବିପର୍ଯ୍ୟସ୍ତେ !
ଆଣିଅଛୁ ତାହା ଚିହ୍ନିନ୍ତୁ କାହାର"
ଏତେ କହି ଅନୁଚର
ଥୋଇ ଦେଲା ମୋର ଆଗେ ଇନ୍ଦୁମତି
ରତ୍ନଭୂଷଣ ଅମ୍ବର
ତାର ନିରୁଦ୍ଦେଶ ଧନ୍ନୁ ପ୍ରିୟତମେ !
ହେଲି ଯେଉଁ ଶଙ୍କାକୁଳ,
ସେହି ଶଙ୍କା ଏବେ ହେଲା ଦୃଢ଼ୀଭୂତ
ପାଇ ଭୂଷଣ ଦୁକୂଳ;
ଦୂତ ମୁଖୁଁ ଏହା ଶୁଣି ବାସ ଭୂଷା
ଦେଖିଲା ବେଳୁଁ ତାହାର
କାରୁଣ୍ୟ ପ୍ରତିମା ସ୍ମୃତିପଟେ ନାଚି
ଯାଉଅଛି ବାରମ୍ବାର ।
ଯେତେ ରୂପେ ମନ କରୁଛି ସଂଯମ
କାହିଁ ହେଉ ନାହିଁ ଥୟ,
ମର୍ମ ଦୁଃଖ ତାର ମରମରେ ରଖି
ସଂସାରୁ ହେଲା ବିଲୟ ।

ହୃଦବନ୍ଧାରକ କରୁଣକାହାଣୀ
ଶୁଣି ପ୍ରାଣନାଥଙ୍କର
ସଜଳ ନୟନେ କହନ୍ତି ସୁନ୍ଦରୀ
ସବନୟେ ଧରି କର;-
"ମହା ତତ୍ତ୍ୱଜ୍ଞାମ ହୋଇ ଯେବେ ନାଥ !
ହେବ ଶୋକେ ଅଭିଭୂତ
ଇତର ଲୋକର ପ୍ରବୋଧନାରେ କ
ହୋଇବ ଶୋକ ନିବୃତ୍ତ ।
କର୍ମଫଳ ପ୍ରାଣୀ ଭୁଞ୍ଜିବା ପାଇଁକ
ଜନମ ଲଭେ ଜଗତେ,
କର୍ମଭୋଗ ଶେଷେ କରନ୍ତି ପ୍ରୟାଣ
ଯେ ଯାହାର ଗନ୍ତପଥେ ।
ରାଜପୁତ୍ରୀ ବୋଲି ଅର୍ଜିତ କରମ
ହେବ କି ତାର ଅନ୍ୟଥା ?
ସ୍ୱୟଂ ହରି କର୍ମ- ଜାଲେ ନପୀଡ଼ିତ;
ଅନ୍ୟ ପକ୍ଷେ କି ବା କଥା ?
ନ ଲଭି ଉଦନ୍ତ ହେଉଥିଲ ବ୍ୟସ୍ତ,
ଲଭିଲଣି ତ ନିଧନ,
ଗତ କଥା ପାଇଁ ଚିନ୍ତା କଲେ ଆଉ
କିବା ଅଛି ପ୍ରୟୋଜନ ?
କିବା ବୁଝାଇବ ? ଅଟେ ଜ୍ଞାନହୀନା
ଦୁର୍ବଳହୃଦୟା ନାରୀ,
ଉପଦେଶ ଦେବା ଯୋଗ୍ୟା ନୁହେଁ ମୁହିଁ
ଶ୍ରୀଚରଣ-ପରିଚାରୀ ।

ଦୟାମୟ ହୃଦ ଇନ୍ଦୁମତୀ ଦୁଃଖେ
ହୋଇଛି ବଡ଼ ଅଧୀର,
କର ଅନୁଗ୍ରହ ଚପଳତା ଦୋଷ
କ୍ଷମା କରନ୍ତୁ ଦାସୀର ।"
ପ୍ରିୟା ପ୍ରିୟବାଣୀ ଶ୍ରବଣେ ତାଙ୍କର
ଚିନ୍ତାତମ ହେଲା ନାଶ,
ହର୍ଷବିକସ୍ୱର ବଦନ ମଣ୍ଡଳେ
ବସ୍ୱଜଲ ସ୍ମିତହାସ ।
କୌତୁକେ ଗଳାରେ ପ୍ରିୟାବିରଚିତ
ପୁଷ୍ପହାରକୁ ଲମ୍ବାଇ
ସମଦୁଃଖେ ଦୁଃଖୀ ପ୍ରଜାବତୀଙ୍କର
ମନ ଦେଲେ ଉଲ୍ଲସାଇ ।
ଏ କାଳେ ରାଣୀଙ୍କ ହକର ସ୍ପର୍ଶରେ
ଜଣାଗଲେ ପରିଚାରିକା,
ଶ୍ୱଶ୍ରୂ ଦେବୀଙ୍କର ଆଦେଶ ଶ୍ରବଣେ
ଚଳିଲେ କୁଳପାଳିକା ।
ସକୁଣ୍ଠ ଚିତ୍ତରେ ଗତି କରୁଥିଲେ
ଅନ୍ତଃପୁରମୁଖେ ସତୀ
ପୃଷ୍ଠେ ଚେଳାଞ୍ଚଳ ଛଳେ ଉଢ଼ ମନ
ଧାଉଁଥିଲା ପତି କତି ।
ପ୍ରେୟସୀ ପ୍ରସ୍ଥାନେ ଉଠି ବୀର କ୍ଷୁଣ୍ଣେ
ଉଦ୍ୟାନେ କରୁ ଭ୍ରମଣ
ଦେଖିଲେ ଉଦ୍ୟାନ- ଦ୍ୱାରସ୍ଥ ପ୍ରହରୀ
କରେ ତର୍ଜନ ଗର୍ଜନ;

ପାଶେଣ୍ଡିଚାରଣ୍ଡିଭଙ୍ଗ          ହୋଇଅଛି ଏକ
କୃଷ୍ଣକାୟ ଦ୍ୱିଜବର—
ଦେଖି ଯୁବରାଜେ          ସଭୟେ ପ୍ରହରୀ
ଯୋଡ଼ିଲା କରପଟର;
ଅପ୍ରତିଭ ହୋଇ          ଜଣାଏ ଛାମୁରେ
“ହେ ଦେବ ! ଏହି ବ୍ରାହ୍ମଣ
ଠେଲି ଦେଇ ଉପ-          ବନେ ଯିବା ଲାଗି
କରେ ଧୃଷ୍ଟାଚରଣ ।
ବୋଦ୍ଧ ମଣିମାଙ୍କ          ଭଜନେ କରିବାର
କହନ୍ତି ଦାସୀ ମୋ ଆଗେ
ଏଣୁ କରି ପଥ ନ          ଛାଡ଼ନ୍ତେ ମୁହିଁ,
ହଠ କରୁଛି ମୋ ସଙ୍ଗେ ।”
ବିପ୍ର କହେ “ମୁହିଁ          ବଡ଼ ଆଶା କରି
ଆସିଛି ବହୁତ ଦୂରୁଁ
ଭିକ୍ଷା କରି କିଛି          ନେବି ବୋଲି ଅର୍ଥ
ଯୁବରାଜଙ୍କ ଛାମୁରୁ ।
ଅଟେ ମୁଁ ବିଦେଶୀ          ଗରିବ ବ୍ରାହ୍ମଣ
ନ ଜାଣଇ ବାଟ ଘାଟ,
ଅଜ୍ଞାତ ଦୋଷକୁ          ଏ ପାମର ମୋତେ
ତର୍ଜୁଛି ଦେଖାଇ ଯଷ୍ଟି ।”
ଦ୍ୱିଜଭକ୍ତ ବୀର          ଶୁଣି ଦ୍ୱିଜଗିର
କହନ୍ତି କ୍ରୋଧେ ଦ୍ୱାସ୍ଥକୁ
“ଅବାରିତ ଗତି          ହେଲା ଏ ରାଜ୍ୟରେ
ଆଜଠୁଁ ସର୍ବ ଦ୍ୱିଜଙ୍କୁ ।

ଯେଉଁ ବିପ୍ରସେବା    କଲେ ଲଭ ହୁଏ
ଅମରଦୁର୍ଲ୍ଲଭ ପଦ,
ନ ଜାଣି ପାମର !    ତାଙ୍କ ସଙ୍ଗତରେ
ଆରମ୍ଭ କରୁଛୁ ଦ୍ୱନ୍ଦ୍ୱ" ।
ଏତେ କହି ଦ୍ୱିଜେ    ପ୍ରଣମି କୁମାର
ବାଞ୍ଛିତ ଧନ ଦେବାକୁ
ଉପବନ ପଥେ    ଗମିଲେ ଶୁଦ୍ଧାନ୍ତେ
ସଙ୍ଗତେ ଘେନ ତାହାକୁ ।
ବିକଟାଳ ରୂପ    ଧରି ଛଦ୍ମବିପ୍ର
ଊର୍ଦ୍ଧ୍ୱପଥେ ଉଦ୍ୟାନର
ଭୂତଳେ କୁମାରେ    ପକାଇ ସଦର୍ପେ
ବସିଲା ବକ୍ଷେ ତାଙ୍କର;
ମଣି-ଚମତ୍କାର    ଶୂନ୍ୟାୟୁଧ ବୀର
ଧରନ୍ତେ ଦୃଢ଼େ ତା' ଗଳା
ବସ୍ତ୍ରାଞ୍ଚଳୁ ମୂଢ଼    ଲୁକାୟିତ ତୀକ୍ଷ୍ଣ
ଛୁରିକା ବାହାର କଲା;
ଚାହିଁ ତାକୁ ବୀର—    ବୋଇଲେ "ଆରେ ରେ !
ଦୁରାତ୍ମର କାଳକେତୁ !
ନିରୀହ ଅବଳା    ପ୍ରାଣ ବିସର୍ଜନ
କରିଛୁ ତୋହର ହେତୁ !
ମୃତ୍ୟୁକାଳ ତୋର    ହେଲାଣି ନିକଟ
ବିଶ୍ୱାସଘାତି ବର୍ବର ।"
କହେ କାଳକେତୁ    "ହେଲା ତୋର ମୃତ୍ୟୁ
ଇଷ୍ଟ ସ୍ମର ଏଥର ।

ଧର୍ମେ ଯାର ମତି, ଧର୍ମେ ଯାର ଗତି,
ସତ୍ୟ ନ୍ୟାୟ ବ୍ରତ ଯାର
ତାଙ୍କୁ କ ବନାଶି ପାରବ ଦାନବ
ମ୍ଳେଚ୍ଛ କାଳକେତୁ ଘୋର ?
ଏ କାଳେ ଅଦ୍ଭୁତେ ଆସି କ୍ଷଣକରେ
ଭେଦବାରୁ ଦୈତ୍ୟ କରେ
କୁମାର ବକ୍ଷରୁ ଖ୍ରମ ଲମ୍ଫ ଦେଇ
ପଳାୟନ କଲା ଖରେ ।
ରେ ରେକାର କରି ଛଟି ଖ୍ରମ ବେଗେ
ଉଭା ହୁଅନ୍ତେ କୁମାର
ଅପୂର୍ବ ସୁନ୍ଦର ବାଳକ ମୁରତି
ଦେଖି ହେଲେ ଚମତ୍କାର ।
ମାଷ ପୁଂସ ନୁହେ ଅଟେ ସେ ବାଳକ
ଛଦ୍ମବେଶେ ଇନ୍ଦୁମତୀ,
ଗଙ୍ଗାଙ୍କ ଆଦେଶେ ଆସିଛୁ କୁମାର
ରକ୍ଷା କାର୍ଯ୍ୟ ହୋଇ ବ୍ରତୀ ।
ଟାଣୋକୀର୍ଣ୍ଣ ପ୍ରାଏ ଗୂଢ଼ ଅଙ୍ଗଯଷ୍ଟି
ଦିଶେ କେଡ଼େ ମନୋହର
ଅମର୍ତ୍ତ୍ୟ ଲାବଣ୍ୟ- ନଧି ଅବା ଶଜେ
ଧରି ନରକଳେବର !
ଗୌର ଗ୍ରୀବା ଦେଶେ ସୁନୀଳ କୁଞ୍ଚିତ
କେଶଗୁଚ୍ଛ ଅଛି ପଡ଼ି;
କନକ ଚମ୍ପକ- ବରଣ ବପୁରେ
ଦିବ୍ୟ ବର୍ମ୍ମ ଅଛି ଜଡ଼ି;

ସ୍କନ୍ଧୁ ବଲମ୍ବିତ ହୋଇ ପୃଷ୍ଠ ଦେଶେ
ପଡ଼ିଛି ତୂଣୀର ଭାର,
ଅମଳ କମଳ ବଦନରୁ ଝରି
ପଡ଼ୁଛି ପ୍ରତିଭାଧାର;
ସୁବଳିତ ବାମ ଭୁଜରେ ଦାନବ
କେଶକୁ ଆକର୍ଷି ଧରି;
ସକ୍ରୋଧେ କହଇ ବାମେତର ଭୁଜେ
ଖଡ୍‌ଗ ଝମକାଇ କରି;
"ଆରେ ଦୁରାତ୍ମନ ! ପୂରିଲା ତୋ କାଳ
ଛାଡ଼ ଜୀବନର ଆଶ,
ଏଡ଼େ ସ୍ପର୍ଦ୍ଧା ତୋର କୁମାରେ ବଧିବା-
ପାଇଁ କରିଛୁ ସାହସ ?"
ସେ ଭୀଷମ ହାସେ ରମ୍ଭାପତ୍ର ପ୍ରାଏ
କମ୍ପେ ଦୈତ୍ୟ ଘନ ଘନ,
ଜଡ଼ ନୟନରେ ଚାହିଁଛି, ବଦନୁ
ନ ଫୁଟୁରେ ପ୍ରତିବଚନ ।
ଅଦ୍ଭୁତ ସୌନ୍ଦର୍ଯ୍ୟ ଅଦ୍ଭୁତ ଶକତି
ଯୁବରାଜ ଦେଖି କରି
ସ୍ତମ୍ଭୀଭୂତ ହୋଇ ରହିଗଲେ କ୍ଷଣେ
ଚିତ୍ରପୁତ୍ତଳିକା ପରି ।
ପୂର୍ଣ୍ଣ ଇନ୍ଦୁ ବଦନା- କନେ ସିନ୍ଧୁ ପ୍ରାୟେ
ପ୍ରାଣ ହେଲା ପୁଲକିତ,
କି ଅପୂର୍ବ ଭାବ ଖେଳିଗଲା ହୃଦେ
ନ ହେଲା ତାଙ୍କୁ ବିଦିତ ।

ବାଳକଙ୍କୁ ଗୃହିଁ କହନ୍ତି କୁମାର
"କ୍ଷାନ୍ତ ହୁଅ ବୀରବର !
ଏ ମହା ପାପୀକି ମାରି କଳୁଷିତ
ନ କର କର ତୁମ୍ଭର ।
ହୋଇଲାଣି କାତର ପ୍ରାଣଭୟେ ଦୂର-
ଶରେ ହୋଇ ନପୀଡ଼ିତ
ନିରସ୍ତ୍ର ଶରଣା- ଗତ ପଳାତକେ
ମାରିବା ନୁହେ ଉଚିତ ।"
ଏହା କହି କାଳ- କେତୁକୁ ବୋଇଲେ
"ଯାଅ ଏଥୁଁ ଦୈତ୍ୟାଧମ !
ଆଉ ଚୋଟେ ରକ୍ଷା ନ ମିଳିବ ଯଦ୍ଧ
କରୁ ଏପରି ଦୁଷ୍କର୍ମ ।"
ଛାଡ଼ି ଦେଲା ଦୈତ୍ୟ- କେଶ ଛଦ୍ମବେଶୀ
କୁମାରଙ୍କ ଆଦେଶରେ
ଫିଙ୍ଗି ମୁଖୁ ଗଜ ଗଲା ପରି ଦୈତ୍ୟ
ପ୍ରସ୍ଥାନ କଲା ସତ୍ୱରେ ।
ଚକିତେ ବିସ୍ମୟେ ପୁଛନ୍ତି କୁମାର
ଛଦ୍ମବେଶୀ ମୁଖ ଚାହିଁ,
"ଅପୂର୍ବ ବାଳକ କିଏ ତୁମେ ବୀର !
ଆସିଅଛ କାହିଁପାଇଁ ?
କି ନାମ ତୁମ୍ଭର ? କାହାର କୁମର ?
କେଉଣ ଦେଶରେ ବାସ ?
କିପରି ଅଜ୍ଞାତେ ଆସିଲ ଏଠାକୁ
କରି କିସ ଅଭିଳାଷ ?"

ପ୍ରଣମି ପଦ୍ମରେ କହେ ବିନୟରେ
କପଟରୂପୀ ବାଳକ,—
"ଅଟେ ମୁହିଁ ଦେବ ! ଭାରତ ନିବାସୀ
କ୍ଷତ୍ରୀ ସନ୍ତାନ ଅରକ୍ଷ;
ଭାରତ ଯୁଦ୍ଧରେ ପିତା ଗଲେ ନାଶ,
ଅନୁମୃତା ହେଲେ ମାତା,
ପିତୃମାତୃ ସୁଖ ଶୈଶବରୁ ମୋର
ଭାଙ୍ଗି ଦେଲା କ୍ରୂର ଧାତା;
ବିରାଗ ମାନସେ ଭ୍ରମୁ ଦେଶେ ଦେଶେ
ତୁମ୍ଭଙ୍କ ଯଶଃକୀର୍ତ୍ତନ
ଶ୍ରବଣେ ଆସିଛି ଯୁଦ୍ଧବିଦ୍ୟା କିଛି
ଶିଖିବାକୁ କରି ମନ;
ଭୃତ୍ୟଠାରୁ ଶୁଣି ଶ୍ରୀତୁମ୍ଭ ଉଦ୍ୟାନେ
ଭ୍ରମଣ କରୁଥିବାର,
ଆସିଲି ଏଠାକୁ ବାରଣ ନ କରି
ଦ୍ୱାସ୍ଥ ଛାଡ଼ିଦେଲା ଦ୍ୱାର ।
ତୁମ୍ଭଙ୍କୁ ବିପଦ କବଳେ ପତିତ
ଦେଖି ନିକ୍ଷେପିଲି ଶର,
ପିତା ଆଦରିଣ ଦେବ, ପ୍ରେମମୟୀ
ନାମ ଅଟଇ ମୋହର ।"
ସୁଲଳିତ ବାଣୀ ବାଳକର ଶୁଣି
ଯୁବରାଜ ସ୍ନେହଭରେ
ପ୍ରାଣରକ୍ଷାକାରୀ ଛଦ୍ମ ବାଳକକୁ
ଆଲିଙ୍ଗି ଧଇଲେ କୋଳେ,

କହ୍ନ ନୁହଇ କି     ସ୍ୱର୍ଗୀୟ ସୁଖରେ
ହେଲ୍ ଇନ୍ଦୁ ମୁହ୍ୟମାନ
ଚିରଦଗ୍ଧ ପ୍ରେତ     ପ୍ରାପ୍ତ ହେଲା ଅବା
ପବିତ୍ର ସ୍ୱର୍ଗଙ୍ଗାସ୍ନାନ !
ତପଃକ୍ଳିଷ୍ଟ ତନୁ     ତପସ୍ୱିନୀ କିବା
ଲଭିଲା ଶାଶ୍ୱତ ପଦ,
ଅବା ପ୍ରାପ୍ତ ହେଲା     ଜନମ ଦୁଃଖିନୀ
ଅଳକାପୁର ସମ୍ପଦ !
ଧ୍ରୁବ ନ ଯାଇ ଯା     ପଦ ପ୍ରାପ୍ୟ ହୋଇ
ରହିଗଲା ଇନ୍ଦୁମତୀ,
ସୁରେଶ୍ୱର ଦତ୍ତ—     ବରେ ଅଙ୍ଗେ ତାର
ଥିବାରୁ ଦୈବୀ ଶକତି ।
ବୋଲନ୍ତି କୁମାର     "ଆଜଠୁଁ ସୋଦର
ହେଲ ମୋର ପ୍ରେମମୟ !
ଇଚ୍ଛା ସୁଖେ ଯାଇ !     ଯାପ ଏଥି ଦିନ
ମନୁ ଛାଡ଼ି ଚିନ୍ତା ଭୟ ।
ଯେବଣ ବାସନା     ଯେତେବେଳେ ଜାତ
ହେଉଥିବ ତୁମ୍ଭମନେ
ଅକୁଣ୍ଠିତ ଚିତ୍ତେ     ଜଣାଇବ ମୋତେ
ନ ରଖି ହୃଦେ ଗୋପନେ ।
ମୋର ବୃଦ୍ଧ ତାତ—     ଜନନୀ, ସୁରଥ
କୁବଳୟା ପ୍ରଭାବତୀ,
ଏମାନଙ୍କ ସ୍ନେହ     ଲଭି ଦୁଃଖସବୁ
ଭୁଲିଯିବ ତୁମ୍ଭ ମତି ।"

ଲୁକବତ୍ସଳମା ଇନ୍ଦୁମତୀ ଚିତ୍ତ
କରି ନ ପାରିଲା ସ୍ଥିର
ଦର ଦର ହୋଇ ପ୍ଲାବି ଦେଲା ଗଣ୍ଡେ
ଯୁଗଳ ନୟନୁ ନୀର ।
କାତରେ କୁମାର ପୁଚ୍ଛନ୍ତି "କିପାଇଁ
କରୁଛ ଏଡ଼େ ରୋଦନ ?"
କହେ ଇନ୍ଦୁମତୀ "ହୃଦ ଦୁଃଖ ଅଶ୍ରୁ
ରୂପେ ହେଉଛି ମୋଚନ ।
ହତଭାଗୀ ମୁହିଁ ଅରକ୍ଷିତ ହୋଇ
ଭ୍ରମୁଥିଲି ଦେଶେ ଦେଶେ,
ପିତୃ ମାତୃ ଭିନ୍ନ ପାଇ ନାହିଁ ସ୍ନେହ
ଅନ୍ୟ କାହାଠାରୁ ଲେଶେ ।
କୃପାମୟ ! ତବ ଅପାର କରୁଣା
ପାଳକବତ୍ସଳତା ସ୍ମରି
ରୁଦ୍ଧ ଶୋକୋଚ୍ଛ୍ୱାସ ଉଛୁଳିଲା ମୋର
ନ ପାରିଲି ଥୟ କରି ।
ପ୍ରେମମୟ କରି ଧରି ନଗରକୁ
ଗମିଲେ ରାଜକୁମାର,
କ୍ରମେ ଏହି କାଣ୍ଡ ନଗରେ, ନଗରେ
ହୋଇଗଲା ପରଚାର ।
ନୟନ ପ୍ରତିମା କୁମାରର ପ୍ରାଣ-
ରକ୍ଷାକର୍ତ୍ତ୍ରୀ ଗୁଣ ଶୁଣି,
ବୃଦ୍ଧ ନରପତି ମନ୍ତ୍ରୀ ଷୀ ତାଠାରେ
ସବୁ ସ୍ନେହ ଦେଲେ ଢାଳି ।

ତନ୍ତୁ ବଳ ସ୍ନେହ କରନ୍ତ ସୁନ୍ଦରୀ
ପତିପ୍ରାଣା ପ୍ରଭାବତୀ ,
ହୃଦୟ ଚନ୍ଦନ ପ୍ରାଣପତିଙ୍କର
ପରାଣରକ୍ଷକ ପ୍ରତି ।
ପାଳିତ କୁମର ଅଭ୍ୟାଗତ ବୀର
ରାଜନନ୍ଦନ, ସୁରଥ,
ଦାସୀ, କର୍ମଚାରୀ, ଭୃତ୍ୟ ଆଦି ସର୍ବେ
ପ୍ରେମମୟେ ଅନୁରକ୍ତ ।
ଦଗ୍‌ଧ ହୋଇଥିଲ ସଗରଜ ପରି,
ଜାହ୍ନବୀ କରୁଣା ବଳେ
ସୁଖ ଲହରୀରେ କ୍ରୀଡ଼ା କଲ ବାଳୀ
ଅଗାଧ ସମ୍ପଦ ଜଳେ ।
ଏତେ ଦିନେ ପ୍ରାଣେ ଅନୁଭବ କଲ
ପବିତ୍ର ପ୍ରେମର ସୁଖ
ଏତେ ଦିନେ ତାର ମନରୁ ଘୁଞ୍ଚିଲ
ଦୁଃସହ ଦୁଶ୍ଚିନ୍ତା-ଦୁଃଖ ।
ମନେ ଭାବେ, "ଯଦି ଗଙ୍ଗାଜଳେ ପ୍ରାଣ
କରିଥାନ୍ତି ବିସର୍ଜନ,
କାହୁଁ ଆଜି ମୋତେ ମିଳନ୍ତା କୁମାର-
ପ୍ରେମମୟ ଆଲିଙ୍ଗନ ?
କାହୁଁ ଦରଶନ କରନ୍ତି ପ୍ରାଣେଶ
ଶ୍ରୀମୁଖ-ଶୀତଦୀଧିତି ?
କାହା ମଧୁମୟ ମଧୁ ସମ୍ଭାଷଣେ
ଲଭନ୍ତ ପରାଣେ ପ୍ରୀତି ?

କାହା ଶ୍ରୀଚରଣ ଧୂଳି ବୋଲି ହୋଇ
କରନ୍ତ କାୟା ପବିତ୍ର ?
କାହା କର ସ୍ପର୍ଶେ ହୁଅନ୍ତା ମୋର ଏ
ଦଗ୍ଧ ପ୍ରାଣ ପୁଲକିତ ?
ତାଙ୍କ ସେବାବ୍ରତ ଧାରଣେ ଯେ ସୁଖ
ଜାତ ହୁଅଇ ଏ ମନେ,
ଥିବ କି ସେ ସୁଖ ଅମରାବତୀରେ,
କିବା ବୈକୁଣ୍ଠଭୁବନେ ?
ଧନୁର୍ବିଦ୍ୟା ଶିକ୍ଷା କାଳେ ଶ୍ରୀମୁଖରୁ
ସ୍ଫୁରେ ଯେଉଁ ବାକ୍ୟସୁଧା
ଷାରରସେ ପ୍ରାଣ ଦିଏ ଉଲ୍ଲସାଇ
ସକଳ ସ୍ୱଭାବ ସୁଧା ।
ମଧୁର ପ୍ରଦୋଷେ ନଗରୋପକଣ୍ଠେ
ସଙ୍ଗେ ଅଭିଜିତ, ଭ୍ରାତ—
ସନ୍ନିଡରେ ମୋତେ ନେଇ ଲକ୍ଷ୍ୟଭେଦ
ପରୀକ୍ଷା କରନ୍ତେ ନାଥ;
ମୋ ଅଦ୍ଭୁତ ଲକ୍ଷ୍ୟ ଭେଦ ଦେଖି ସ୍ନେହେ
କରନ୍ତି ମୁଖ ଚୁମ୍ବନ,
ରତି, ଶଚୀ ଆଦି ଅମରୀଙ୍କ ସୁଖ
ହେବ କି ତାହା ତୁଳନ ?
ଯେଉଁ ସ୍ନେହଭକ୍ତି ଭାଗ୍ୟକୁ ପ୍ରଶଂସା
କରୁଥିଲି ନିରନ୍ତରେ
ଏ ସ୍ୱର୍ଗୀୟ ସୁଖ ହେବ କି ତାଙ୍କର
ପ୍ରଣୟଲୁବ୍ଧ ଅନ୍ତରେ ?

ବଳାସ ଭବନେ ବନ୍ଧମୀ ପରାଏ
ରହିଛନ୍ତି ଅନୁସରି
ପ୍ରାଣେଶ୍ୱରଙ୍କର ପାଶେ ପାଶେ ମୂର୍ତ୍ତି
ଖଞ୍ଜିଅଛୁ ଗୁମ୍ଫା ପରି ।
ପିଅର ବକ୍ଷେ ଦେ ହୋଇ ମିୟମାଣ
ସଖୀଗଣ ସଙ୍ଗେ ଥାଇ
କେତେ ଦେବ ଦେବୀ କଲି ଦରଶନ
ସାନ୍ତ୍ୱନା ଲଭିବା ପାଇଁ,
ସେହି ଦରଶନେ ଅଭିଳାଷ ପୂର୍ଣ୍ଣ
ହେଲା ମୋର ଏହିଠାରେ;
ପତିତପାବନୀ ଶାନ୍ତିପ୍ରଦାୟିନୀ
ସୁରେଶ୍ୱରୀ କରୁଣାରେ ।"
ପ୍ରେମାମୋଦେ ବାଳୀ ଏହିପରି ଭଳି
ଦିନ ବଞ୍ଚେ ରାଜପୁରେ,
ଦେବୀଦତ୍ତ ବରେ ଦିନୁ ଦିନୁ ଅଙ୍ଗେ
ଅସୀମ ସାରଲ୍ୟ ସ୍ଫୁରେ ।
ସ୍ୱଧନ୍ୱା ସୁରଥ ସୀର ଅଭିଜାତ
ପ୍ରେମମୟୀ-ପ୍ରେମମୟ
କେବେ ଶୃଙ୍ଗାଟକେ ଦେଖାନ୍ତି କୌତୁକେ
ସମରଶିକ୍ଷାଭିନୟ ।
କେବେ ଅସ୍ତ୍ରେ ଶସ୍ତ୍ରେ ହୋଇ ସୁସଜ୍ଜିତ
ସୈନ୍ୟବଳ ଘେନି ସଙ୍ଗେ
ଯାନ ବାହନରେ ମୃଗୟା ବନୋଦେ
ଭ୍ରମନ୍ତି ଅରଣ୍ୟେ ରଙ୍ଗେ ।

ଶାସ୍ତ୍ର ଅଧ୍ୟୟନେ,    ଦ୍ୟୁତେ, କାବ୍ୟାମୋଦେ,
ସଙ୍ଗୀତେ, ବୀଣା ବାଦନେ,
ବିବିଧ ବିନୋଦେ    ଯାପେ ଦିନ ପ୍ରେମ—
ପରମ ପ୍ରଫୁଲ୍ଲ ମନେ ।
ଗଙ୍ଗାବରେ ଅଙ୍ଗ    ହୋଇଥିଲା ତାର
ସକଳ ସଦ୍‌ଗୁଣପୂର
କାନ୍ତ ସହବାସେ    ବିକଶି ସୌରଭ-
ହାଠ କରି ଦେଲା ଦୂର ।
ସ୍ୱଭାବେ ଉଜ୍ଜ୍ୱଳ    ରତନ ଯେସନ
ମଣିକାର ଶାଣ ଲାଗି
ଝକ ଝକ କରେ    କୁମାର ଶିକ୍ଷାରେ
ତଥା ହେଲା ସେ ଶୋଭାଙ୍ଗୀ ।
ସନ୍ତୋଷପ୍ରବାହେ    ଭାସିଗଲା ହୃଦୁ
ଲାଳସା ପ୍ରବୃତ୍ତିଗଣ,
ନିଷ୍କାମ ପ୍ରେମରେ    ଉଜ୍ଜ୍ୱଳ ଆଲୋକ
କଲା ପ୍ରଭା ବିକିରଣ ।

---

## ପଞ୍ଚମ ସର୍ଗ

ରାଜା ହଂସଧ୍ୱଜ    ବିଜେ କରିଛନ୍ତି
ରତ୍ନ-ସିଂହାସନ ପରେ
କୁମାରପ୍ରତିମ    —    କୁମାର ଯୁଗଳ
ଯେନ ବେନ ପାରୁଶରେ;

ବସିଛନ୍ତି ଆଗେ    ବେନି ମହାବୀର
ଅଭିଜାତ ପ୍ରେମମୟ,
ତାରିପଛେ ପରେ    ମଣ୍ଡିଛନ୍ତି ସଭା
ରାଜପାରିଷଦଚୟ ।
ନାନା ରଙ୍ଗେ ଗଳ୍ପ    ଆମୋଦରେ ରତ
ହୋଇଛନ୍ତି ପରସ୍ପରେ,
ଶିବଗଣ ସହ    ଶିବ ଅବା ବିଜେ
କରିଛନ୍ତି କୈଳାସରେ ?
ଏହିକାଳେ ହୋଇ    ସଭା ସମ୍ମୁଖରେ
ଉପନୀତ ନଗ୍ର ଚର,
ଅବନତ ଶିରେ    ପ୍ରଣମି ବିନୟେ
କହେ ନଗ୍ର ସମାଚାର;—
"ଅବଧାନ ହେଉ    ହେ ଦେବ ମହିମା !
କୁମାର ସୁଗୁଣାନ୍ୱିତ !
ଦେଖିଲି ଘୋଟକ    ଭ୍ରମୁଛି ନଗରେ
ହୋଇ ବିଚିତ୍ର ମଣ୍ଡିତ;
ଶିରୋଦେଶେ ତାର    କଣ୍ଠେ ପରିଏ
ରହିଅଛି ଜୟପତ୍ର;
ଯୁଧିଷ୍ଠିରଙ୍କର    ଯଜ୍ଞାଶ୍ୱ ସେ ବୋଲି
ତହୁଁ ହେଲି ଅବଗତ ।
ବସ୍ତୁ ଦେଶ ଭୂମି    ଆଜ ଉପନୀତ
ହେଲା ଭଦ୍ରାବତୀ ପୁରେ,
ବୃକୋଦର ପାର୍ଥ    ସଇନ ସାମନ୍ତ
ଘେନି ଅଛନ୍ତି ଅଦୂରେ ।

ରକ୍ଷୀ ଅନୁଚରେ ଭ୍ରମୁଛନ୍ତି ଅଶ୍ୱ
ଗତିପଥ ଅନୁସରି,
ସ୍ୱାମୀଙ୍କ ଆଦେଶ ହେଲେ ସେହି ଅଶ୍ୱ
ରଖିବୁ ବନ୍ଧନ କରି ।"
ଅର୍ଦ୍ଧାକାଶେ ଶୁଣି ଭୀମ ବଜ୍ରଧ୍ୱନି
ହେଲେ ପ୍ରାଏ ପ୍ରାଣୀ ସ୍ତବ୍ଧ,
କୋଳାହଳପୂର୍ଣ୍ଣ ସର୍ବ ନିକେତନ
ହୋଇଲା କ୍ଷଣେ ନିସ୍ତବ୍ଧ ।
ଆନନ୍ଦେ ଅଧୀର ହୋଇ ନରବର
ପୁଚ୍ଛନ୍ତି ଦୂତକୁ ଚାହିଁ
"ଆସିଛନ୍ତି କି ସଙ୍ଗତେ ତାଙ୍କର
ପାର୍ଥସଖା ଯଦୁସାଇଁ ?"
ଦୂତ କହେ, "ଦେବ ! ଦେଖିଲି କେବଳ
ବୃକୋଦର ଧନଞ୍ଜୟ
ସଙ୍ଗତରେ ଆସି— ଅଛନ୍ତି ସାତ୍ୟକି
ପ୍ରଦ୍ୟୁମ୍ନ କର୍ଣ୍ଣତନୟ ।
ନ ଦେଖିଲି କୃଷ୍ଣେ" ଦୂତମୁଖୁଁ ଯାଏ
ଶୁଣି କହନ୍ତି ଏସନ,
ନାହିଁ ମୋର ଭାଗ୍ୟେ କରିବାକୁ ନର-
ନାରାୟଣ ଦରଶନ ।
ହାୟ ଭଗବାନ ! ସର୍ବଦା ଅର୍ଜୁନ
ସଙ୍ଗେ ସଙ୍ଗେ ତୁମ୍ଭେ ଥାଇ
ମୋ ମନ୍ଦ କର୍ମକୁ ଭଦ୍ରାବତୀ ପୁରେ
ଆଗମନ କଲ ନାହିଁ ।

ବଡ଼ ଆଶା ଥିଲା ପାର୍ଥରଥେ ତବ
ପୂର୍ଣ୍ଣ ମୂର୍ତ୍ତି ବିଲୋକନ
କରିବା ପାଇଁ କି, ମାତ୍ର ସେ ବାସନା
ନ ହେଲା ମୋର ପୂରଣ ।
ଦୁର୍ନିବାର ମହା- ଯୋଦ୍ଧା ଭୀମସେନ
ଅର୍ଜ୍ଜୁନ ସହିତେ ରଣ
କରିବାରେ ଆଉ କିବା କାର୍ଯ୍ୟ ଅଛି ?
ନାହାନ୍ତି ତ ନାରାୟଣ !
ଅବରୋଧିଲେ ସେ ଅଶ୍ୱ ବୃଥା ହେବ
ରାଜ୍ୟଧ୍ୱଂସ ପ୍ରଜାନାଶ,
ଏତେ କହି ନୃପ ତଳକୁ ବଦନ
କଲେ ତେଜି ଦୀର୍ଘଶ୍ୱାସ ।
ନୃପତି ପଦୁରେ ପ୍ରଣମି ସଧୀରେ
କହନ୍ତି ଯୁବରାଜନ
"ମାଗୁଅଛି ଭିକ୍ଷା ଦିଅ ଅନୁମତି
କରିବା ଅଶ୍ୱେ ବନ୍ଧନ ।
କୃଷ୍ଣବଳେ ସିନା ବଳୀ ଧନଞ୍ଜୟ
ନାହାନ୍ତି ସେ ତାଙ୍କ ପାଶେ
ତେଣୁ ହୀନବଳ ଅଟନ୍ତି ଫାଲ୍‌ଗୁନୀ
ଜୟୀ ହେବା ଅନାୟାସେ ।"
ବୋଇଲେ ନରେଶ "ଭାରତଯୁଦ୍ଧରେ
ଅର୍ଜ୍ଜୁନ ରଥରେ ହରି
ସାଧି ଭକ୍ତହିତ ବାହୁଥିଲେ ରଥ
ଶୁଣି ହେଉଥିଲା ସ୍ମର ।

ସେହି ଦୃଶ୍ୟ ଧନେ ଏ ଚର୍ମ ନୟନେ
ଦେଖିବାକୁ ଥିଲା ମନ,
ମାତ୍ର ଜାଣୁଅଛି ମନ୍ଦଭାଗ୍ୟ ମୁହିଁ
କାହୁଁ ପାଇବି ଦର୍ଶନ ?"
ଉତ୍ତରିଲେ ପିତୃ- ବତ୍ସଳ କୁମାର
"ପିତଃ ! ନ ହୁଅ କ୍ଷୁଣ୍ଣ;
ପ୍ରତିଜ୍ଞା ମୋହର ତବ ଅଭିଳାଷ
କରିବ ନିଶ୍ଚୟ ପୂର୍ଣ୍ଣ !
ଶରଜାଳେ ପାର୍ଥେ କରିବ ବିବ୍ରତ
ବାଣେ ଆଚ୍ଛାଦି ଗଗନ,
ସବଳେ ହରିଙ୍କି ଭଦ୍ରାବତୀପୁରେ
କରାଇବି ଆନୟନ ।
ଧର୍ଷଣ-ଶକତି ପ୍ରହାରି ଅର୍ଜୁନେ
କରାଇବି ହତଜ୍ଞାନ,
ରକ୍ଷା କରିବାକୁ ସଖାକୁ ନିଶ୍ଚୟ
ଆସିବେ ଶ୍ରୀଭଗବାନ ।"
ବୋଇଲେ ନରେଶ "ଜାଣେ ମୁହିଁ ବତ୍ସ
ଅତୁଳ ବିକ୍ରମ ତୋର;
ମାତ୍ର ପାଣ୍ଡବଙ୍କ ସଙ୍ଗେ ବାଦ କଲେ
ହେବ ଅମଙ୍ଗଳ ଘୋର ।
ନିଶ୍ଚୟ ତାଙ୍କର ଗୌରବ ରକ୍ଷଣ
କରିବେ ମଧୁସୂଦନ,
ଏ କାଳ ସମରେ ପେଶିବାକୁ ତୋତେ
ବଳୁ ନାହିଁ ମୋର ମନ ।"

ବୋଇଲେ କୁମାର "ଅଛନ୍ତି ଯେ ପ୍ରଭୁ;
ଅନନ୍ତ ମଙ୍ଗଳମୟ,
ତାଙ୍କ ଆଗମନେ କାହିଁପାଇଁ ତାତ !
କର ଅମଙ୍ଗଳ ଭୟ ।
ଯେବେ ମୋର ଭାଗ୍ୟ ଥିବ ଏହି ରଣେ
ଅର୍ଜ୍ଜୁନ ହସ୍ତେ ନିଧନ
ଲଭିବା ପାଇଁକି, କାହା ବଳେ, କେବେ
ହେବ କି ତାହା ଖଣ୍ଡନ ?
ଶ୍ରୀମାର୍ଜ୍ଜୁନ ସଙ୍ଗେ ହୋଇବ ସମର
ମିଳିବ କୃଷ୍ଣ ଦର୍ଶନ,
କ୍ଷୟେ ମୋକ୍ଷପ୍ରାପ୍ତି, ଜୟେ ଯଶଃ ଖ୍ୟାତି
ଶ୍ଳାଘ୍ୟ ହେବ ଏ ଜୀବନ ।
ଅଛନ୍ତି ଆମ୍ଭର ରଣରଙ୍ଗ ବୀର
ସୈନ୍ୟବଳ ଅଗଣିତ
ଅପ୍ରଧୃଷ୍ୟ ରଣେ ଅଛନ୍ତି ସୁରଥ
ପ୍ରେମମୟ ଅଭିଜିତ,
ଏ ସୁଯୋଗ ତାତ ! ଥାଉଁ କି ଉଚିତ
କ୍ଷାତ୍ରଧର୍ମ ତ୍ୟାଗ କରି
ପ୍ରାଣରଙ୍କ ହୋଇ ରହିବା ମାରବେ
ଗୃହେ କାପୁରୁଷ ପରି ?
ନ ରହିବେ କେହି ଦେହୀ ଚିର ହୋଇ
ଅଲଙ୍ଘ୍ୟ ନିୟତିବଳେ,
କାଳ-ସିନ୍ଧୁ ମୁଖେ ଚଳିବେ ସରବେ
ଯଶ ଥିବ ମହୀତଳେ ।

ଇନ୍ଦ୍ରଲୋକେ ଲାଗି, ଅନ୍ତେ ମୋକ୍ଷପ୍ରାପ୍ତ
ଇଚ୍ଛନ୍ତି ମାନବେ ଯାହା,
ସେହି ଲାଗି ମୁକ୍ତ ଆସିଲେ ପାଶକୁ
ପରିତ୍ୟାଜ୍ୟ କି ହେ ତାହା ?
ଭବଗ୍ରାହୀ ହରି ନୁହନ୍ତି କାହାରି
ସର୍ବେ ତାଙ୍କର ସମାନ
ଧର୍ମର ସହାୟ ହୋଇ ଦୟାମୟ
ରଖନ୍ତି ଭୃତ୍ୟର ମାନ ।
ପାଣ୍ଡୁପୁତ୍ରଙ୍କର 'ଏକା କପାଁ ହେବେ
ଅଟନ୍ତି ଜଗତପିତା,
ତବ ମନୋବାଞ୍ଛା, ନିଶ୍ଚୟ ପୂରଣ
କରିବେ ନ କର ଚିନ୍ତା ।
ନିଶ୍ଚିନ୍ତରେ ପିତଃ ! କର ଦରଶନ
ବସି ତୁଙ୍ଗ ସୌଧଚୂଳେ
ନରନାରାୟଣ ଯୁଗଳ ମୂରତି
ସମର-ସାଗର କୂଳେ ।"
ସୁରଥ କୁମର ଅଭିଜିତ ବୀର
ସହ ସଭାସଦଗଣ
ଯୁବରାଜଙ୍କର କଥାକୁ ସରବେ
ହର୍ଷେ କଲେ ସମର୍ଥନ ।
ସମବେତ ବୀର- ବୃନ୍ଦ ଦର୍ପ ଗିର
ଶ୍ରବଣେ ପରମ ମୁଦେ
ଚିର ଅଭିପ୍ରେତ ଆଶା ପ୍ରବର୍ତ୍ତିତ *
ହେଲା ନରନାଥ ହୃଦେ,

* ଉତ୍ତେଜିତ

ସେ ଆଶା ସ୍ରାବନ୍ତେ ତ୍ରୁଟିଗଲା ବଳେ
ଭବିତବ୍ୟ ଭଯ୍ଯ୍ଯ୍ୟଥା
ଘୂର୍ଣ୍ଣିଲା ଦୂର୍ଲ୍ଲଭ ଇଷ୍ଟସିଦ୍ଧ ଲୋଭ-
ପ୍ରଭାବେ ସ୍ୱ-ଅଭିଜ୍ଞତା ।
ଉତ୍କଳକାକୁଳ ହୋଇ ମହୀପାଳ
କୃଷ୍ଣ ଦରଶନ ପାଇଁ
ବୋଇଲେ ଦୂତକୁ— "ବେଗେ ବାଜବରେ
ଅବରୋଧ କର ଯାଇ ।
ଯାଅ ପ୍ରେମମୟ ଅଭିଜାତ ଶୀଘ୍ର
କର ସୈନ୍ୟ ଆୟୋଜନ,
ବାଳ, ବୃଦ୍ଧ, ନାରୀ ନଗ୍ରେ ଥାଇ, ସର୍ବେ
ରଣେ କରନ୍ତୁ ଗମନ ।
ଅସ୍ତ୍ରଶସ୍ତ୍ରେ ସର୍ବେ ହୋଇ ସୁସଜ୍ଜିତ
ଥିବେ ସିଂହଦ୍ୱାରେ ଆଜ,
କାଲି ଉଷାକାଳେ କରିବେ ପ୍ରୟାଣ
ଉଦେ ନୋହୁ ଗ୍ରହରାଜ ।
କଠୋର ପ୍ରତିଜ୍ଞା ଶୁଣ ସର୍ବେ ମୋର
ନ ହେବ ଯେ ଉପସ୍ଥିତ;
ସୂର୍ଯ୍ୟାସ୍ତ ପୂର୍ବରୁ ଏଥି ହେବ ସେହୁ
ତପତ ତୈଳେ ନିକ୍ଷିପ୍ତ ।"
ଏହି ଭୟଙ୍କର ପଣ ନୃପଙ୍କର
ନଗରେ ପଡ଼ୁଁ ଚହଳ
ଚର୍ମେ, ବର୍ମେ, ଢବ୍ୟା- ଯୁଦ୍ଧୋ ମଣ୍ଡି ଅଙ୍ଗ
ସଜ ହେଲେ ସୈନ୍ୟବଳ ।

ରଥ, ଗଜ, ଅଶ୍ୱ ହୋଇଲେ ମଣ୍ଡିତ
ବିବିଧ ବାସଭୂଷାରେ,
ହୋଇଲ ପ୍ରେରିତ ଇକ୍ଷ୍ୱାକୁ ସୈନ୍ୟ
ପଞ୍ଚଗୃହ ସିଂହଦ୍ୱାରେ,
ସୁଧନ୍ୱା ସୁରଥ ବେନି ରାଜସୁତ
ପ୍ରେମମୟ ଅଭିଜାତ,
ଏକୁ ଏକ ଶୋଭା ଦିଶୁଥିଲେ ହୋଇ
ସାରଭୂଷା ବିଭୂଷିତ ।
ସୈନ୍ୟ ସମାବେଶେ ରଖାଇ ସୁରଥେ
ପ୍ରେମମୟେ ଅଭିଜାତେ,
ପ୍ରାଣପ୍ରିୟା ମୁଖ ଦର୍ଶନ ଲାଳସେ
ଗଲେ କୁମାର ତୁରିତେ ।
ବସିଥିଲେ ସତୀ ପଥକୁ ଅନାଇଁ
ପତି ଆଗମନ ଆଶେ,
ସତୃଷ୍ଣ ନୟନେ ଏ କାଳେ ଶୁରେନ୍ଦ୍ର
ମିଳିଲେ ତାଙ୍କ ସକାଶେ ।
ଦେଖି କୁମାରଙ୍କୁ, ପ୍ରଭାବତୀ ପାଶୁଁ
ଗଲେ ସଜନୀନିକର,
ଭାସ୍କର ଆଗମେ ପ୍ରାଚୀପୁରୁ ଯଥା
ତୁଅନ୍ତି ତାରା ଅନ୍ତର ।
ତରତରେ ଉଠି ଦ୍ୱିପକ୍ୱିବିମ୍ବଓଷ୍ଠୀ
କରେ ଧରି ରତ୍ନଝରି
ପ୍ରାଣେଶ ପଙ୍କଜ ପୟରଯୁଗଳ
ଦେଲେ ପ୍ରକ୍ଷାଳନ କରି ।

କର ଧରି କାନ୍ତେ ରତନ ପର୍ଯ୍ୟଙ୍କେ
ବସାଇ ପୂଛନ୍ତି ଧୀରେ,
ସବିସ୍ମୟ ମନେ ବିରସ ବଦନେ
ଲଳିତ ମଧୁର ଗିରେ—
"ଏ କି ପ୍ରାଣନାଥ ! ରଣ ବେଶେ ଆଜ
କପାଁ ତବ ଆଗମନ ?
କାହିଁପାଇଁ ସିଂହ- ଦୁଆରେ ବାଜଇ
ରଣବାଦ୍ୟ ଘନଘନ ?"
ଉତ୍ତରିଲେ ବୀର, "ହୋଇବ ସମର
ଭୀମ ଅର୍ଜୁନ ସଙ୍ଗତେ,
ମେଲଣି ନେବାକୁ ଆସିଅଛୁ ପ୍ରିୟେ,
ଯିବି ପିତୃ ଆଜ୍ଞାମତେ ।"
ଶତବଜ୍ରପାତ ହୋଇଗଲା ସତୀ
ପ୍ରଫୁଲ୍ଲ ହୃଦ-କମଳେ,
ଧୈର୍ଯ୍ୟ-ଆବରଣେ ଆବରି ସେ ଭାବ
ରହିଲେ ମୌନେ ନିଶ୍ଚଳେ ।
ପ୍ରିୟା ମନୋଭାବ ଜାଣି ଯୁବରାଜ
କହନ୍ତି ଅଙ୍କେ ବସାଇ
"ଅଚିରେ ମୁଁ ଫେରି ଆସିବି ସୁନ୍ଦରୀ !
ଅଧୀର ହୁଅ କପାଇଁ ?
କ୍ଷତ୍ରିସୁତା ତୁମ୍ଭେ ଯୁଦ୍ଧବାର୍ତ୍ତା ଶୁଣି
ହେଉଛ ଏଡ଼େ କାତର,
ବିଭୁ କୃପା କଲେ ଏହି ରଣ ଅବା
ଅଟେ କେତେକ ମାତର ।"

ବୋଇଲେ ସୁନ୍ଦରୀ, "ଅସମ୍ଭବ କଥା
ଜାଣିବାର ଧନଞ୍ଜୟେ,
ଯାହା ତାଙ୍କୁ ହରି ସତତ କପଟି
ଭୟ ହୁଏ ମୋ ହୃଦୟେ ।
ମହାଶକ୍ତିଶାଳୀ ସେ ଶ୍ୱେତବାହନ
ନୁହନ୍ତି ସାମାନ୍ୟ ଜନ,
ତାଙ୍କ ସଙ୍ଗେ ରଣ କରିବାକୁ ନାଥ !
କପାଁ ବଳାଇଲ ମନ ?"
ବୋଇଲେ କୁମାର "ଇଚ୍ଛାମୟଙ୍କର
ଇଚ୍ଛା ଥିବ ପ୍ରିୟେ ! ଯାହା
କରିବା ପାଇଁକି କାହାର ବଳରେ
ଅନ୍ୟଥା ହୋଇବ ତାହା ?
ଇଚ୍ଛନ୍ତି ମୋ ପିତା ହୋଇବେ କୃତାର୍ଥ
ହେରି ନରନାରାୟଣେ,
ସକଳେ ହରିଙ୍କି ଆଣିବ ପ୍ରତିଜ୍ଞା
କରିଛି ତାଙ୍କ ଚରଣେ,
ସଫଳ ହୋଇବ ଜନମ ଆମ୍ଭର
କୃଷ୍ଣଙ୍କୁ କରି ଦର୍ଶନ,
ମଙ୍ଗଳ କାର୍ଯ୍ୟରେ କାହିଁପାଇଁ ପ୍ରିୟେ !
ବିରସ କରୁଛ ମନ ।"
ଅଶ୍ରୁପୂର୍ଣ୍ଣ ମୁଖେ ଉତ୍ତରିଲେ ସତୀ
ଧରି ପତିଙ୍କର କର,
"ନାହିଁ ମୋର ଦୁଃଖ ନ ହୋଇ ବିମୁଖ
ଯୁଦ୍ଧକୁ ଗମନ କର;

ରଣ ଜୟ କରି    ଆସ ଶୁଭେ ଫେରି
ରଖି ଯଶ ଅନଶ୍ୱର
ବଇରାଜ ବାହ୍ମ    ଖଣ୍ଡନ୍ତୁ, ସଦାୟେ
ହୁଅନ୍ତୁ ଶାରଙ୍ଗଧର,
ନରନାରୀପୂର୍ଣ    କରି ଦରଶନ
ଲଭ ଏବେ ପୁରୁଷାର୍ଥ,
ଏ ପରବଶ କାର୍ଯ୍ୟେ    ବାରଣ କରିବ
ନାହିଁ, କାନ୍ତ ପ୍ରାଣନାଥ ।"—
"କାନ୍ତ ପ୍ରାଣନାଥ"    କହି ନୀରବରେ
ରହିଲେ ଗୃହିଁ ଭୂତଳେ
ଲାଜପାଟଳିମା    ବୋଳଦେଲା ତାଙ୍କ
ପୂଲକିତ ଗଣ୍ଡସ୍ଥଳେ
ମନ୍ଦାମାନେ ପଦ୍ମ-    ଲତିକା ପରାଏ
ଥରିଗଲା ଅପଘନ
ଦେଖି ପ୍ରିୟାଗାତ୍ର    ପୁଚ୍ଛନ୍ତି କୁମାର
ହୋଇ ବିସ୍ମୟେ ମଗନ;
"କପାଇଁ ମଉନେ    ରହିଲ ଗୋ ! ମନେ
କି କଥା ରଖି ଗୋପନେ,
ଶପଥ ତୁମ୍ଭଙ୍କୁ    ଅଛି ପ୍ରିୟତମେ !"
କହ ଅକପଟ ମନେ ।"
ସଲଜ୍ଜେ ବଚନ୍ସ୍ୟେ    ଲଳିତ ମଧୁର
ମୃଦୁ ଦରସ୍ଫୁଟ ଗିରେ
ଭାଷିଲେ ପ୍ରାଣେଶେ,    ବିନମ୍ର ବଦନେ
ଦଳଭାଷିଣୀ ସଧୀରେ,—

"ତବ ପଦଦାସୀ ଅବା କ ଲଳସୀ
କଣି ଏ ମନ ପରାଣ
ହୋଇ ଏତେ ବ୍ୟସ୍ତ କପାଁ ପ୍ରାଣନାଥ !
ପକାଉଛ ଆଉ ଗୁଣ ?
ସୁଧନ୍ୱା—ମନ ପ୍ରାଣ ଯେବେ ମୋର ପ୍ରାଣାଧିକେ !
କପାଁ ଏତେ କୁଟିଳତା ?
ପ୍ରଭାବତୀ—ହୃଦୟେଶ୍ୱରଙ୍କୁ କବା ଅବଦତ
ଅଛି ଦାସୀ ହୃଦ କଥା ?
ସୁଧନ୍ୱା—ଚଳାପାଙ୍ଗି ! ଅଜ ଏ କ ଚପଳତା
ଜାତ ହୋଇଛି ତୁମ୍ଭର ?
ପ୍ରଭାବତୀ—ନ ଜାଣଇ ନାଥ ! ଏହା ଗୂଢ଼ତତ୍ତ୍ୱ
ଜାଣନ୍ତ ଜଗଦୀଶ୍ୱର !
ସୁଧନ୍ୱା—ଶୁଭେ ରଣରୋଳ କପର କରିବ
ବିଳାସ ଭବନେ କ୍ରୀଡ଼ା ?
ପ୍ରଭାବତୀ—ହୋଇ ଅନାସ୍ତୃତ ନବେଦଲ ମାତ୍ର
ଦଅ ନାହିଁ ଆଉ ବ୍ରୀଡ଼ା ।"
ସ୍ତମ୍ଭୀଭୂତ ହୋଇ ରହିଲେ କୁମାର
ଶୁଣି ପ୍ରଭାବତୀ ଗିର,
କନ୍ଦୂତ ଘଟଣା ନ ହେବାରୁ ଜଣା
ହୃଦୟ ହେଲ ଅସ୍ଥିର ।
ବୃଥା କପାଁ-ଖାର ! ହେଉଛ କାତର
କର ସ୍ୱଧର୍ମ ରକ୍ଷଣ,
ବୁଝଇ ଉଚତ ଧର୍ମକୁ ଉପେକ୍ଷି
କରିବା କର୍ମ ପାଳନ ।

ଭକ୍ତବଂଶ ରକ୍ଷି, ଭକତ ମହିମା
ପ୍ରକାଶ କରିବା ପାଇଁ
କରାଇଅଛନ୍ତି ପ୍ରଭାବତୀ ମତ
ବିଚଳିତ ଭାବଗ୍ରାହୀ ।
ଭାଳିଲେ କୁମାର "ଯଦି ପିତାଦେଶ
କରିବି ନାହିଁ ପାଳନ,
ତପ୍ତ ତୈଳଦ୍ରୋଣେ ନିକ୍ଷେପିତ ହେଲେ
ସେ ପାପ ହେବ କ୍ଷାଳନ;
ମାତ୍ର ଋତୁସ୍ନାତା ସହଧର୍ମିଣୀର
ନ ରଖିଲେ ଅନୁରୋଧ,
ଆଶାଭଙ୍ଗ ପାପ କରିବ ସିନା ମୋ
ମୁକ୍ତିମାର୍ଗ ଅବରୋଧ ।"
ମୋକ୍ଷ ଅଭିଳାଷ ଥିଲା ତେଣୁ ତାଙ୍କ
ମହତ କର୍ତ୍ତବ୍ୟ ବ୍ରତ,
ପତ୍ନୀ ଅନୁରୋଧ ରକ୍ଷଣେ ଧୀରେନ୍ଦ୍ର
ଅଗତ୍ୟା ହୋଇଲେ ରତ ।
ଏଣେ ଅସ୍ତୋନ୍ମୁଖ ଦେଖି ଦିନକରେ
ପ୍ରେମମୟୀ ଉଦ୍‌ବେଗରେ,
ଅନ୍ତଃପୁରେ ଆସି ଦେଖିଲା କୁମାର
ଅଛନ୍ତି ପ୍ରିୟା ପାଶରେ ।
ବାହୁଦେଶୁ ଫେରି ଆସିଲା ନ ପାରି
ଭରସି କେଳି ସଦନେ,
ପ୍ରଭାବତୀଙ୍କର ପ୍ରଣୟ ପ୍ରାର୍ଥନା
ଜ୍ଞାତ ହୋଇ କ୍ଷୁଣ୍ଣ ମନେ ।

ଅନ୍ତଃପୁର ଦ୍ୱାରେ ବସି ନୀରବରେ
ଅଶ୍ରୁ କରି ବିମୋଚନ,
ଭାବେ "ଦେବଙ୍କର କୂଟନୀତି ବଳେ
ଘଟୁଛି ପରା ଏସନ !
ଏହି ବିଷ୍ଣୁ କୂଟେ ପଡ଼ି ନରପତି
କଲେ କଠୋର ପ୍ରତିଜ୍ଞା,
ଏହି ବିଷ୍ଣୁ କୂଟେ ସତୀ ପ୍ରଭାବତୀ
ହେଲେ ଏଡ଼େ ଅନଭିଜ୍ଞା ।
ହେଲା ବିଭାବରୀ ନ ଆସିଲେ ଫେରି
ପ୍ରିୟାପୁରୁ ଯୁବରାଜ,
ଏହି ଉପଲକ୍ଷେ କେ ଜାଣେ କି ଭୀମ
ବିପ୍ଳବ ଘଟିବ ଆଜ ।"
ଏ କାଳେ ପ୍ରେୟସୀ ପାଶୁ ଯୁବରାଜ
ଆସି ଅନ୍ତଃପୁରଦ୍ୱାରେ
ଦେଖନ୍ତେ ପ୍ରେମକୁ, ପୁଚ୍ଛନ୍ତି "କିପାଇଁ
କାନ୍ଦୁଛ ଭାଇ ! ଏଠାରେ ?"
କର ଯୋଡ଼ି ପ୍ରେମ କହେ ସବିନୟେ,
"ଦେବାରୁ ଦିବାବସାନ
ତୁମ୍ଭଙ୍କୁ ନ ଦେଖି କୋପେ ପ୍ରଜ୍ୱଳିତ
ହେଉଛନ୍ତି ନରରାଣ ।
ସୂର୍ଯ୍ୟାସ୍ତ ପୂର୍ବରୁ ଆସି ଏଥି ମୁହିଁ
ରହିଛି ଅପେକ୍ଷା କରି,
ହୃଦୟ ମୋହର ହେଉଛି ଆକୁଳ
ପିତାଙ୍କ ପ୍ରତିଜ୍ଞା ସ୍ମରି ।"

ବୋଇଲେ କୁମାର, "ନ ହୁଅ କାତର
ଅଦୃଷ୍ଟରେ ଥାଏ ଯାହା,
ସକଳ ଉଦ୍‌ଯୋଗ ବ୍ୟର୍ଥ କରି ଘାଇ
ଭୋଗ ହୁଏ ନିଶ୍ଚେ ତାହା ।"
ପ୍ରେମମୟୁ କର ଧରି ଯୁବରାଜ
ଗଣ୍ଡ କରି ଅଣ୍ଡ ଖରେ
ସଭାରେ ପ୍ରବେଶି, ପିଅର ପୟୂରେ
ପ୍ରଣମିଲେ ବନୟୂରେ ।
ଦେଖି କୁମାରଙ୍କୁ କ୍ରୋଧାନ୍ଧ ନୃପତି
ଭୃତ୍ୟଙ୍କୁ ଦେଲେ ଆଦେଶ,
"ଅତିଶୀଘ୍ର ନେଇ ଏହାକୁ ତପତ
ତଇଲ ଦ୍ରୋଣେ ନିବେଶ ।"
ଆରକ୍ତ ନୟନେ ପୂର୍ତ୍ତ୍ରେ ଘୂର୍ଣ୍ଣି କୋପ-
କମ୍ପିତସ୍ୱରେ ରାଜନ
କହନ୍ତି, "ପାପିଷ୍ଠ ! ପୁତ୍ର ହୋଇ ମୋର
ଆଦେଶ କରୁ ଲଙ୍ଘନ,
ସୈନ୍ୟ କୋଳାହଳେ ରଣ ବାଦ୍ୟରୋଳେ
କମ୍ପୁଅଛି ପୁରଦ୍ୱାର,
କାମିନୀର ସଙ୍ଗେ ମାତିଅଛୁ ରଙ୍ଗେ
ଅନ୍ତଃପୁରେ ଦୁରାଚାର !
କଠୋର ଆଦେଶ ରହିଛି ତୋ ପ୍ରତି
କାଲି ପ୍ରାତେ ପଶି ରଣେ
କପିଧ୍ୱଜ ରଥେ ଦେଖାଇବୁ ମୋତେ
ବୋଲି ନରନାରାୟଣେ ।

ସେ ଗୁରୁ ଦାୟିତ୍ୱ- ପୂରିତ କଠୋର-
କର୍ତ୍ତବ୍ୟ କର୍ମ ବିସ୍ମରି
ରହିବାକୁ ପୁରେ, ରେ ଦୁର୍ବୁଦ୍ଧି ! ତୋର
ଚିତ୍ତ ବଳାଇଲ କପରି ?
ଷାଣ୍ଡ କୁଳାଙ୍ଗାର ! ଆରେ ରେ ବର୍ବର !
ନିର୍ଲଜ୍ଜ ପୁରୁଷାଧମ !
ଏହି କ ତୋହର ପିତୃ-ମନୋବାଞ୍ଛା-
ପୂରଣେ କର୍ତ୍ତବ୍ୟ କର୍ମ ?"
କରଯୋଡ଼ି ପୁତ୍ର କହନ୍ତି ବିନୟେ,
ପିତୃ ଶ୍ରୀଚରଣେ ଚାହିଁ,
ଶାନ୍ତ କର "କୋପ ପ୍ରତିଜ୍ଞାହିଁ ତବ
ଅନ୍ୟଥା ହୋଇବ ନାହିଁ ।
କଠୋର ଆଦେଶ ପାଳନେ ସ୍ୱାମୀଙ୍କ
ଅଛୁ ଏ ଦାସ ପ୍ରସ୍ତୁତ,
ସଭା ମଧ୍ୟେ ଆଜ ନ ଦିଅନ୍ତୁ ଲଜ୍ଜା
ହେଲଣି ମୁଁ ଅର୍ଦ୍ଧମୃତ ।"
ସଭ୍ୟସଙ୍ଘ ରଣ- ସୈନିକ ନିକର
ଶୁଣି ପିତା ପୁତ୍ର କଥା
ମହା ଭୟେ ସର୍ବେ ହୋଇ ପାଣ୍ଡୁ ଗଣ୍ଡ
ଭୂତଳକୁ କଲେ ମଥା ।
ଚିତ୍ରାର୍ପିତ ପରି ରହିଲେ ସରବେ
ସ୍ଫୁରିଲ ନାହିଁ ବଚନ,
ବ୍ୟକ୍ତ କଲେ ନୃପେ ହୃଦଭାବ ଛଳେ
ଅଶ୍ରୁ କରି ବିମୋଚନ ।

ଜାଣି ତାଙ୍କ ମନ	ବୋଇଲେ ରାଜନ
"କର ଆଦେଶ ପାଳନ
ପ୍ରତିଜ୍ଞା ମୋହର	ନ ହେବ ଅନ୍ୟଥା
ନ ଟଳିବ ସ୍ନେହେ ମନ ।"
କହେ ପ୍ରେମମୟ	କାତର ବଚନେ
ପଡ଼ି ନୃପତି ଚରଣେ,
"ଲଘୁ ଦୋଷେ ଦେବ !	ଏଡ଼େ ଗୁରୁ ଦଣ୍ଡ
ଦିଅ ନାହିଁ ଅକାରଣେ ।"
ବୋଇଲେ ନରେଶ	"ବାଳକ ତୁ ବତ୍ସ !
ନ ଜାଣୁ କ୍ଷତ୍ରିୟ ଧର୍ମ,
ବୃଥା ବାକ୍ୟ ବ୍ୟୟ	ନ କର ଅବଶ୍ୟ
ପାଳିବ କର୍ତ୍ତବ୍ୟ କର୍ମ ।"
ଦର୍ପଭରେ ଉଠି	କହେ ପ୍ରେମମୟ
"ଦୋଷ କ୍ଷମ ନରବର !
ଏ ଦେହେ ବିନ୍ଦୁଏ	ରକ୍ତ ଥିବାଯାଏ
ଗୁରୁ ଯୁବରାଜଙ୍କର,
ଥାଉ ଅନ୍ୟ କଥା,	କେଶାଗ୍ର ସ୍ପରଶ
କରି ନ ପାରିବେ କେହି,
ବାଳଚପଳତା	ବୋଲି ନ ଭାବନ୍ତୁ,
ପ୍ରତିଜ୍ଞା ମୋହର ଏହି ।"
ପ୍ରେମମୟ ବାଣୀ	ଶୁଣି ନୃପମଣି
କହନ୍ତି କ୍ରୋଧେ ଏସନ,
ପୁଚ୍ଛ ବିଦଳିତ	କାଳ ସର୍ପବତ
କରି ଭୀଷଣ ଗର୍ଜନ;—

"ସମ୍ମୁଖେ ମୋହର ସଗର୍ବେ ଉତ୍ତର
କରୁଅଛୁ ମନ୍ଦମତି ।
ନିତାନ୍ତ ଦୁର୍ଭାଗ୍ୟ ପଡ଼ିଲୁ ତୋହର
ନାହିଁ ଆଉ ଅବ୍ୟାହତି ।"
ପ୍ରେମମୟେ ଏହା କହି ହଂସଧ୍ୱଜ
ଆଜ୍ଞା ଦେଲେ ଅନୁଚରେ,—
"କାରାଗାରେ ନେଇ ପକାଅ ଏହାକୁ
ବନ୍ଧନ କରି ସତ୍ୱରେ ।"
ଭୂପତି ବଚନେ ସଜଳ ନୟନେ
ଅନାଇ କୁମାର ପ୍ରତି
କହେ ପ୍ରେମମୟ, "ଏ ଦୀନ ଦାସକୁ
ଦଣ୍ଡ ଦେବ ! ଅନୁମତି,
ତବ ଶ୍ରୀଚରଣ ପ୍ରସାଦେ ପ୍ରେମର
ନାହିଁ କାହାଠାରେ ଭୀତି,
ଦେଖାଇବ ମୂର୍ତ୍ତି ଜଗତ ଜନଙ୍କୁ
ବାଳକ ଅଦ୍ଭୁତ କୀର୍ତ୍ତି ।"
ପ୍ରେମମୟେ ବୋଧି ବୋଇଲେ କୁମାର
"କୋପ ଶାନ୍ତ କର ଭାଇ !
ପିତୃ ଆଦେଶରେ ତେଜିବ ଏ ଦେହ
ତାଙ୍କ ଲାଗି ଥିଲା ପାଇ;
ଏ ଘୃଣ୍ୟ ନଶ୍ୱର ଜୀବନମୋହେ କି
ଲଙ୍ଘିବ ପିତାଙ୍କ ସତ୍ୟ ?
ବିଭୁଙ୍କ ଇଚ୍ଛାରେ କାଳ ପୂର୍ଣ୍ଣ ମୋର
କିମ୍ପାଇଁ ହେଉଛ ବ୍ୟସ୍ତ ?"

ଅନୁଚରେ ଚାହିଁ ବୋଇଲେ କୁମାର
"କର ରଜାଜ୍ଞା ପାଳନ,
ନତୁବା ଏ କ୍ଷଣି ହୋଇବ ତାଙ୍କର
କୋପ ଅନଳେ ଇନ୍ଧନ ।
ବିଷାର୍ଣ୍ଣ ହୃଦୟ ପ୍ରେମମୟ ଶୁଣି
ଯୁବରାଜଙ୍କ ବଚନ;
ମନ୍ତ୍ରହତବୀର୍ଯ୍ୟ— ଭୁଜଙ୍ଗ ପରାଏ
ରହିଲା ପୋତି ବଦନ ।
ନରେଶ ଆଦେଶେ ବନ୍ଦୀ ହୋଇ ପ୍ରେମ
ରହିଲା କାରାଭବନେ,
କୁମାରଙ୍କୁ ନେଇ ରାଜ ଅନୁଚରେ
ଚଳିଲେ ଯଜ୍ଞ ସଦନେ,
ଯଜ୍ଞଶାଳେ ତୈଳ- ଭାଣ୍ଡ ହୋଇଲା ତପ୍ତ
ନୃପ ଆଦେଶାନୁସାରୀ,
ଏ ନର୍ମମ କର୍ମ କଲା ଛଦ୍ମଭୃତ୍ୟ
କାଳକେତୁ ଆତତାୟୀ
ତୈଳ ଭାଣ୍ଡ ପାଶେ ବସି ପଦ୍ମାସନେ
ଊର୍ଦ୍ଧ୍ୱେ ତୋଳି ବେନି କର,
ମୁଦ୍ରିତ ନୟନେ ବିଭୁପଦେ ସ୍ତବ
କରନ୍ତି ନୃପକୁମର,—
"ଜୟ ଜଗନ୍ନାଥ ! ଅନାଥର ନାଥ !
ଜୟ ଜୟ ନାରାୟଣ !
ତୁମ୍ଭର ଜୀବନ ତୁମ୍ଭର ଚରଣେ
କରୁଅଛୁ ସମର୍ପଣ ।

ତୁମ୍ଭର ସଂସାର          ରହିଲ ତୁମ୍ଭର,
ମୋହ ଲୀଳା ସମାପନ,
ଦିଅ ପଦାଶ୍ରୟ          ହରି ଦୟାମୟ !
ଯେଣ ଦାସ ନିବେଦନ ।
ଯୋଗଧ୍ୟାନେ ଯୁବା          ରହିଲେ ନିଷ୍ଠଳେ
କର ରଖି ଜାନୁଦ୍ୱୟେ,
ଦେଖି କାଳକେତୁ          ବୈର ସାଧନାର୍ଥେ
ଅତି ପ୍ରଫୁଲ୍ଲ ହୃଦୟେ ।
ସତ୍ୱର ଧାରଣ          କଲା କୁମାରଙ୍କୁ
କରି କର ପ୍ରସାରଣ,
ଧରିଥିଲା ଯଥା          ଶକ୍ତିଭେଦ କାଳେ
ସଉମିତ୍ରିଙ୍କୁ ରାବଣ ।
ନିକ୍ଷେପି ପ୍ରଖରେ          ନୃପ କୁମାରଙ୍କୁ
ପ୍ରଜ୍ୱଳିତ ତୈଳଭାଣ୍ଡେ,
ପ୍ରଚଣ୍ଡ ଅନଳ-          ତାପେ ହୋଇ ତାପି
ପଳାୟନ କଲା ବୃଣ୍ଡେ ।
ଉଠିଲା ଚୌଦିଗୁଁ          କ୍ରନ୍ଦନର ରୋଳ,
ପଡ଼ିଗଲା ହାହାକାର,
ଘୁଡ଼ ଉଦ୍ଭ୍ରାନ୍ତ          ଶୋକାବେଗରେ ସର୍ବେ
କରନ୍ତି ନୃପେ ଧିକାର ।
ସ୍ଥାଣୁ ପରି ହୋଇ          ବସିଛନ୍ତି ରାଏ
ଯଥା ମହାବାତ୍ୟା ପ୍ରାନ୍ତେ,
ରୁଦ୍ରରୂପ ଗର୍ଭେ          କରି ସମ୍ବରଣ
ରହେ ପାରାବାର ଶାନ୍ତେ ।

ରାଣୀହଂସପୁରେ ପଡ଼ିଲା ଚହଳ,
ରାଜରାଣୀ ପ୍ରଭାବତୀ
ନବରୁ ବାହାରି, ବକ୍ଷେ କର ମାରି
ଉଚ୍ଚେ ରୋଦନ କରନ୍ତି ।
ଚଉପାଶେ ଘେରି ସହଚରୀବୃନ୍ଦ
କରି ନ ପାରନ୍ତି ଥୟ,
ଝୁରି ବ୍ୟାଧ ଶରେ କୁରଙ୍ଗୀ ପରାଏ
ଲୋଟନ୍ତି ହୋଇ ଅଥୟ ।
"କେଣେ ଗଲୁ ମୋର ଜୀବର ଜୀବନ"
ବୋଲି ବିଳପନ୍ତି ରାଣୀ
"ଛାଡ଼ିଦିଅ ପଥ ଯିବି ପୁତ୍ରପାଶେ
ହୃଦୟ ତୁଟଇ ଜାଣି ।"
ଯୁବରାଜ୍ଞୀ କଥା ଯାଉଅଛି ସରି
ନାହିଁ ତାଙ୍କ ବାହ୍ୟ ଜ୍ଞାନ,
ଧରିଛନ୍ତି ସଖୀ ଆକଟି, ଅନଳେ
କରନ୍ତେ ଲମ୍ଫ ପ୍ରଦାନ ।
"ଯହିଁ ମୋର ପତି ତହିଁ ମୋର ଗତି"
ବୋଲି କହନ୍ତି ଦୁଃଖିନୀ,
"ଏ ରାଜଭବନ ହେଲାଣି ଶ୍ମଶାନ
କାହିଁ ଥିବ ଅଭାଗିନୀ ?
ସବୁ ଅନ୍ଧକାର ହୋଇଲା, ମୋହର
ବୋଲି ନ ରହିଲା କିଛି,
ସେ ପଦରାଜୀବ ହରାଇ, ଏ ଜୀବ
ନ ଯାଇ ଅଛି ଯା' ଛି ! ଛି !

ମୋହ ଲାଗି ନାଥ ଧର୍ମ ରକ୍ଷା କରି
ଅନଳେ ହେଲେ ନିକ୍ଷିପ୍ତ,
ପଥ ଅନୁସରି ଯାଇ ପରଲୋକେ
କରିବି ତାହାଙ୍କୁ ପ୍ରୀତ ।”
ବସୁମତୀ ଅଙ୍ଗ ହୋଇଲା ପଙ୍କିଳ
ଜନତା ଲୋତକ ଜଳେ,
କ୍ରନ୍ଦନର ରୋଳେ ଗ୍ରହନକ୍ଷତ୍ରାଦି
କମ୍ପିଲେ ନଭୋମଣ୍ଡଳେ;
ରାମ ବନବାସ ଶ୍ରବଣେ ବିବଶା
ଯଥା ସାକେତ ନଗରୀ,
କୁମାର ବନ୍ଧନେ ଭଦ୍ରାବତୀ ପୁର
ହୋଇଛି ଆଜ ସେପରି ।
ବଧୂ ଦଶା ଦେଖି ନୟନୁ ଲୋତକ
ଝରେ ନରପତିଙ୍କର,
ଦାବଦଗ୍ଧ ଗିରି ଅଙ୍ଗୁ ବର୍ଷାଗମେ
ଉଚ୍ଛୁଳେ ଯଥା ନିର୍ଝର ।
ଭାଳନ୍ତି ମାନସେ, “କେଡ଼େ ମନ୍ଦ କୃତ୍ୟ
କଲି ଚଣ୍ଡାଳ ପାମର,
ସୌଭାଗ୍ୟ ପ୍ରତିମା ବଧୂମାତା ମୋର
ଲୋଟୁଛି ଆସି ଦାଣ୍ଡର ।
କି ବୋଲି ସାନ୍ତ୍ୱନା ଦେବି ମୁଁ ତାହାକୁ
ଧିକ ଧିକ ଏ ଜୀବନ,”
ଭାଳୁ ଭାଳୁ ରାଏ ତଳି ପଡ଼ି ତଳେ
ହୋଇଗଲେ ଅଚେତନ ।

ହାହାକାର କରି ପାତ୍ରମନ୍ତ୍ରିଗଣେ
ନୃପତିଙ୍କି ଟେକି ଧରି,
କରନ୍ତେ ସଚେତ, ଉଠି ନରନାଥ
କହନ୍ତି ବିଳାପ କରି,—
"ଯାର ବାହୁବଳେ ବାନ୍ଧିଥିଲି ଆଶା
କରିବାକୁ ଦରଶନ
ନରନାରୀପୂର୍ଣ, ସେ ତ ଗଲା, ଆଉ
ଏ ପ୍ରାଣେ କି ପ୍ରୟୋଜନ ?
କ୍ଷିପ୍ର ପ୍ରାଏ ଅଗ୍ନି ପାଶେ ଉପଗତ
ହୁଅନ୍ତେ ନରନାୟକ,
ତୈଳଦ୍ରୋଣୀ ମଧ୍ୟୁଁ ହେଲେ ଆବିର୍ଭୂତ
ଭାସ୍ୱର ପୁରୁଷ ଏକ ।
ଦିବ୍ୟ ବପୁଷ୍ମନ୍ତ ବଦନ ସସ୍ମିତ
ଜ୍ୱାଳାମାଳା ବିଭୂଷିତ,
ଶ୍ରୀଅଙ୍ଗରୁ ପ୍ରଭା ସ୍ଫୁରି କରି ଦେଲା
ଚଉଦିଗ ଉଦ୍ଦୀପିତ;
ସେହି ଜ୍ୟୋତିର୍ମୟ- ପ୍ରଭାରେ ଆଲୋକ-
ମାଳିକା ହେଲା ମଳିନ,
ସବିତା ଆଗମେ ହୁଅନ୍ତି ଯେସନ
ଚନ୍ଦ୍ରତାରା ଦ୍ୟୁତିହୀନ ।
ତପ୍ତକାଞ୍ଚନାଭ ନୃପ ନନ୍ଦନଙ୍କୁ
ଅଛନ୍ତି କୋଳରେ ଧରି,
ଦିଶୁଅଛି ଶୋଭା ଉଦୟ-ଭୂଧରେ
ନବୋଦିତ ରବି ପରି ।

ଚମତ୍କୃତ ହୋଇ ଚକିତ ନୟନେ
ଅଛନ୍ତି ସୃଞ୍ଜୟ ସକଳେ,
ବାଡ଼ବାଗ୍ନି ଶିଖା ସହସା ପ୍ରକାଶ
ହେଲା କି ସାଗର ଜଳେ ?
ସେ ଦିବ୍ୟ ପୁରୁଷ କୋଇଲେ "ହେ ନୃପ !
ମୁଁ ଅଟେ ହବ୍ୟବାହନ,
ମୋର କିବା ଶକ୍ତି ବିଷ୍ଣୁ ଭକତକୁ
କରିବା ପାଇଁ ଦହନ ?
ପାପ ପକ୍ଷେ ମୁହିଁ ଅଟଇ ବଦଗ୍ଧ
ପୁଣ୍ୟୋଦକ ପୁଣ୍ୟପକ୍ଷେ,
ସର୍ବ ଗ୍ରାସ କରି ଧାର୍ମିକକୁ ଧରି
ରଖେ ମୋ ଶୀତଳ ବକ୍ଷେ ।
ତ୍ରେତାଯୁଗେ ମୋତେ ଜନକ ନନ୍ଦିନୀ
ପୂତ କରିଥିଲେ ଥରେ,
ଆଜ ପୂତ ହେଲି ବୈଷ୍ଣବ ରତନ
ତୁମ୍ଭ ସୁତ ପରଶରେ ।
ସୁଧନ୍ୱା, ସୁରଥ, ପ୍ରେମ, ଅଭିଜିତ,
ତୁମ୍ଭର ଏ ଶକ୍ତି ସ୍ମର
କେବଳ ହରିଙ୍କ ବିନୁ ଅନ୍ୟ କେହି
ପାରିବେ ନାହିଁ ସହାର ।"
ଏତେ କହି ଅଗ୍ନି ହେଲେ ଅନ୍ତର୍ହିତ
ସମର୍ପି ନୃପେ ତନୁଜେ,
ପିତୃମାତୃ ପଦେ ବନ୍ଦି, ଆଲିଙ୍ଗନ
କଲେ କୁମାର ସାନୁଜେ ।

ପ୍ରଣମିଲେ ବୟୋ- ଜ୍ୟେଷ୍ଠ ଅଭିଜନେ,
ସମ୍ଭାଷିଲେ ସଭ୍ୟଗଣେ,
ପରମ ପୁଲକେ ଯୁବରାଜଙ୍କର
ପଦ ବନ୍ଦି ଜଣେ ଜଣେ ।
ହୁଏ ସିନ୍ଧୁ ଯଥା ଉତ୍ତରଳ ପର୍ବ—
ଶର୍ବରୀଶ ବିଲୋକନେ,
କୁମାର ଚନ୍ଦ୍ରଙ୍କୁ ଦେଖି ସେସ୍ୱପର
ଆନନ୍ଦିତ ସର୍ବଜନେ ।
ପୁଲକେ ପ୍ରଫୁଲ୍ଲେ ନୟନରୁ କରି
ଆନନ୍ଦାଶ୍ରୁ ବିସର୍ଜନ,
ବଧୂଙ୍କୁ ସଙ୍ଗରେ ନେଇ ହଂସପୁରେ
କଲେ ମହୀଶ ଗମନ ।
ନୃପାଦେଶେ ପ୍ରେମ- ମୟୂ କାରାଗାରୁ
ଆମୀତ ହୋଇ ବନ୍ଦନ,
ଯୁବରାଜଙ୍କର ଗୌରବ ଭାସ୍ୱର
ଶ୍ରୀମୁଖ କଲ୍ଲ ଦର୍ଶନ ।
ସାର୍ଦ୍ଧ ଏକଯାମ— ରଜନୀରେ ସର୍ବେ
ସାରି ଅଶନାଦି ମାତ୍ର
ଯେଝା ପଟ୍ଟବାସେ ସୁଖେ ଗଲେ ନିଦ୍ରା
ଭାବି ଯୁଦ୍ଧକଥା ଚିନ୍ତା ।



# ଷଷ୍ଠ ସର୍ଗ

ହେଲା ନଶି ଶେଷ ଗ୍ରବଲେ ବାୟସ
କୁକ୍‌କୁଟ କଳ୍‌ଲପକ୍ଷୀ,
ଭାନୁ ଆଗମନୁ ପୌରନ୍ଦଷ ଦ୍ୱାର
ଫିଟାଇଲେ ଉଷା ସଖି !
କି ଅବା ଲଗାଇ ଦେଲେ ବଶ୍ୱଶିଳ୍ପୀ
ରବରଥେ ପାଟ ଡୋର !
କି ଅବା ପ୍ରବାଳ ପ୍ରାସାଦ ଉଠିଲା
ଭେଦ ତମସିନ୍ଧୁ ଘୋର !
କିବା ମାନବତ୍ତି କମଳମ୍ମା ମାନ
ହରଣ କର୍‌ବା ଇଚ୍ଛି,
ଅଲକ୍ଷିତେ ଥାଇ ଦେଉଛନ୍ତ ଭାନୁ
ଅନୁରାଗରାଶି ବାଞ୍ଛି !
କେଦାରେଶ୍ୱରଙ୍କ ମନ୍ଦିରୁ ଶୁଭନ୍ତେ
କମ୍ବୁଘୋଷ ଘନ ଘନ,
ଜାଗରୂକ ହୋଇ ଉଠିଲେ ତଳପ
ତେଜ ରଣସଜ୍ଜିଗଣ ।
'ସାଜ, ସାଜ' ବୋଲି ପଡ଼ିଲା ଚହଳ
ବାଜିଲା ବବଧ ବାଦ୍ୟ,
ହେ୍‌ଷିଲେ ତୁରଙ୍ଗେ, ଗର୍ଜିଲେ ମାତଙ୍ଗେ,
କଲେ ସୈନ୍ୟେ ସିଂହନାଦ !
ସେ ଭୀଷଣ ରବେ କମ୍ପିଲା ଅମ୍ବର,
ଜଳିଲା ଅସ୍ତ୍ର ଝମକେ,

ଦାବାନଳ ଶିଖା — ସହସା ବିଭାସି
ଗଲା କି ଗହନ ଅଙ୍କେ !
ବିବିଧ ଭଙ୍ଗରେ — ଉଡ଼ଇ କେତନ
ରଥଧ୍ୱଜେ ଫରଫରେ,
ଉଷାରାଗେ ସ୍ଫୁର- — ଞ୍ଜିତ ତରଙ୍ଗ କି
ଉଠୁଛି-ସୈନ୍ୟସାଗରେ !
ପର ପୁରଞ୍ଜୟ — ଯୁବରାଜନଙ୍କୁ
ସସ୍ନେହେ ଅଙ୍କେ ବସାଇ,
ସେନାପତି ପଦେ — ବରି ଶିରେ ଶାଢ଼ୀ
ବାନ୍ଧିଦେଲେ ନରସାଇଁ ।
ବନ୍ଦାଣ ରଚନ- — ଥାଳି ଧରି କରେ
ସଖିଗଣ ସଙ୍ଗେ ନେଇ
କଲେ ମାରାଜନା — କୁମାରଙ୍କୁ ଅଶ୍ରୁ
ପୂର୍ଣ୍ଣମୁଖେ ମହାଦେଈ ।
ପିତାମାତା ପଦେ — ବନ୍ଦି ଭକ୍ତିଭରେ
ନୃପତି କୁମର କେନ,
ବିଜେ କଲେ ରଥେ — ପ୍ରେମମୟୀ ଅଭି-
ଜିତଙ୍କୁ ସଙ୍ଗତେ ଘେନ ।
ରାଉତ; ମାହୁନ୍ତ, — ରଥୀ, ପଦାତିକ,
ଅଶ୍ୱାରୋହୀ ଆଦି ଲୋକେ,
ଥୋକାଏ ଚଢ଼ିଲେ — ଯାନ ବାହନରେ
ପଦବ୍ରଜୀ ହେଲେ ଥୋକେ ।
ଜୟ ଜୟ ନାଦେ — ଭଣ ଶୁଭ ବାଦ୍ୟେ
କମ୍ପାଇ ସାରା ମେଦିନୀ,

ତାରକାଭୂଷିତ ତଳାକାଶ ପରି
ଚଳନ୍ତି ରଣବାହିନୀ ।
ଅଟ୍ଟାଳିକା ଶିରେ କୁଟୀର ଦୁଆରେ
ଗବାକ୍ଷ ପାର୍ଶ୍ୱେ, ପ୍ରାଚୀରେ,
ଉଦ୍ଗ୍ରୀବଶତ ପୁର- ରମଣୀନିକର
ନିରେଖୁଥାନ୍ତି ଅଧୀରେ ।
ମନାସି ମାନସେ ବଳି, ବ୍ରତ, ପୂଜା
କରନ୍ତି ଆର୍ତ୍ତେ ପ୍ରାର୍ଥନା,
ବିଜୟ ବାହୁଡ଼ା ରଣଲକ୍ଷ୍ମୀଙ୍କର
ପଦ୍ମରେ ସର୍ବ ଅଙ୍ଗନା ।
କାହିଁ ରଣଯାଣୀ ପୁତ୍ରକୁ ନିରେଖି
କାନ୍ଦଇ ମାତା ବିକଳେ,
ପ୍ରଣୟିନୀ କାହିଁ ପ୍ରିୟ ମୁଖ ଚାହିଁ
ଭାସଇ ଲୋତକ ଜଳେ,
ପିତାଙ୍କୁ ଅନାଇଁ କାନ୍ଦୁଛନ୍ତି କାହିଁ
ପୁତ୍ରଦୁହିତା ଆତୁରେ,
କାଷ୍ଠପୁତ୍ତଳିକା ପରି ତାଙ୍କ ମାତା
ରହିଛି ଚାହିଁ ଅଦୂରେ,
ସହୋଦରେ ଚାହିଁ ସହୋଦରା କାହିଁ
କାନ୍ଦଇ ହୋଇ କାତର,
ନଇରାଶ୍ୟ କରି ପୁନର୍ଦ୍ଦରଶନ
ଆଶା ଅନ୍ତରୁ ଅନ୍ତର ।
ଜାମାତାକୁ ଚାହିଁ କାନ୍ଦେ ଶାଶୁ କାହିଁ
କପାଳରେ କର ହାଣି,

ଏରୂପେ ଅବଳା ବଳାପଧ୍ୱନରେ
ପୂର୍ଣ୍ଣ ହେଲା ରାଜଧାମ ।
ବାହ୍ନମା ବର୍ଣ୍ଣବା- ଯାଏ ଗୃହିଁଥିଲେ
ସର୍ବେ ଅତୃପ୍ତ ନୟନେ,
ଅଦୃଶ୍ୟ ହେବାରୁ ଚଳାଲେ ସ୍ୱପୁରେ
ଅଶ୍ରୁମୁଖେ କ୍ଷୁବ୍ଧମନେ ।
ଯୁବରାଜଙ୍କର ଆଦେଶ ପୂର୍ବରୁ
ନଗର ପଶ୍ଚିମେ ସ୍ଥିତ,
ବସ୍ତୃତ ପ୍ରାନ୍ତରେ କରଥିଲେ ଭୃତ୍ୟେ
ସ୍କନ୍ଧାବାର ସଂସ୍ଥାପିତ ।
ବପଣୀରେ ତାର ଦଗ୍‌ବଳୟ ବ୍ୟାପୀ
ଦଶୁଥାଏ ମନୋରମ,
ପାଣ୍ଡୁ ପୁତ୍ରଙ୍କର ଶ୍ୱେତ ତମ୍ବୁ ଶ୍ରେଣୀ
ଶୁଭ୍ର ଶୈଳାବଳ ସମ ।
ଉଭୟ ତୀରରେ ମତ୍ତ ଆଜ ନରେ
ବବଧ ଗଳ୍ପାମୋଦରେ,
ସେନା'ପତମାନେ ହୋଇଛନ୍ତି ରତ
ସଇନ୍ୟ ସମାବେଶରେ ।
ମାଜୁଛନ୍ତି ଅସ୍ତ୍ର କାହିଁ ବସି ଥୋକେ
କାହିଁ ଅବା ଯୋଦ୍ଧୃଦଳ,
କର ମଲ୍ଲଯୁଦ୍ଧ ଲକ୍ଷ୍ୟଭେଦ ଆଦ
କରୁଛନ୍ତ କୋଳାହଳ ।
ଗଜବାଜଗଣ ହୋଇ ସୁସଜ୍ଜିତ
ରହୁଛନ୍ତ ଯଥାସ୍ଥାନେ,

ଏ ଆଦି ବିବିଧ ରଙ୍ଗେ ଭୁଞ୍ଜି ଯୁଦ୍ଧ-
କାର୍ଯ୍ୟେ ରତ ଲୋକମାନେ ।
ଅର୍ଜ୍ଜୁନଙ୍କୁ ଚାହିଁ କହନ୍ତି ପାବନ
"ଶୁଣ ବତ୍ସ ଧନଞ୍ଜୟ !
ପରମ ଧାର୍ମିକ ବୈଷ୍ଣବ ଅଟନ୍ତି
ହଂସଧ୍ୱଜର ତନୟ ।
ତାଙ୍କ ସଙ୍ଗେ କାଲି ହୋଇବ ସମର
ଶୁଣି ଲାଗେ ବଡ଼ ବ୍ୟଥା,"
ବୋଇଲେ ଗାଣ୍ଡିବୀ "ଭବିଷ୍ୟତ ଦେବ !
ହୁଏ କି କେବେ ଅନ୍ୟଥା ?
ବିଭୁଙ୍କର ଇଚ୍ଛା ହେବ ନିଶ୍ଚେ ପୂର୍ଣ୍ଣ,
ଚିନ୍ତା କରି କିସ କାର୍ଯ୍ୟ,
କର୍ତ୍ତବ୍ୟ ପାଳନେ ଅଟଇ ଆମ୍ଭର
କାଲି ଯୁଦ୍ଧ ଅନିବାର୍ଯ୍ୟ ।''
ଏସନ ବିବିଧ କଥୋପକଥନେ
ଅସ୍ତ ଗଲେ ଦିବାକର,
ସାନ୍ଧ୍ୟକୃତ୍ୟ ସାରି ଅଶନାଦି କାର୍ଯ୍ୟେ
ହେଲେ ସର୍ବେ ତତପର ।
କ୍ରମେ କ୍ରମେ ହେଲା ନିସ୍ତବ୍ଧ ଧରଣୀ
ଉଭୟ ପକ୍ଷ ଶିବିରେ,
ସ୍ୱପନ ସଙ୍ଗତେ ନିଦ୍ରାଦେବୀ ଆସି
ବିହରିଲେ ଧୀରେ ଧୀରେ ।
ବାୟସ ନ ଡାକୁଁ ଶଯ୍ୟା ତେଜି କରି,
ପ୍ରାତଃକୃତ୍ୟ ସମାପନ,

ଉଭୟ ଶିବିରେ କଲେ ବେନିଦଳ
ରଣ ପାଇଁ ଆୟୋଜନ ।
ଉଭୟ ଶିବିରେ ଉଠିଲା ସଘନେ
ରଣବାଦ୍ୟ ମହାସ୍ୱନ,
ସମର ସଜ୍ଜାରେ ହେଲେ ସଜ୍ଜୀଭୂତ
ଉଭୟ ସଇନଗଣ ।
ଗୃହୁଁ ଗୃହୁଁ ହେଲା ଚଉଦିଗ ପୂର୍ଣ୍ଣ
ଯୋଦ୍ଧା, ଗଜ, ଅଶ୍ୱ, ରଥେ
ପଦଭରେ ମହୀ କମ୍ପାଇ ସୈନ୍ୟେ
ଆସିଗଲେ ଯେଝା ମତେ ।
ମାତି ବୀରରସେ ଧାଆନ୍ତି ସାହସେ
ଘୋରେ ଭୀଷଣ ହୁଙ୍କାରେ
କେ ଆସ୍ଫାଳେ ଅସି କେ ଧରେ ତ୍ରିଶୂଳ
.କେ ବା କାର୍ମୁକ ଟଙ୍କାରେ;
କମ୍ପାଇ ଅବନୀ ରଣବାଦ୍ୟ ବାଜେ
ଅସ୍ତ୍ରରାଜି ଝନଝନେ,
. ଗଜ ଗରଜନେ ବାଜୀ ହ୍ରେଷାରବେ,
ସିଂହନାଦେ ଶଙ୍ଖସ୍ୱନେ ।
ସମ୍ମୁଖୀନ ହୋଇ ବେନି ଅନୀକିନୀ
ରହିଲେ ସ୍ତମ୍ଭିତେ କ୍ଷଣେ,
କହନ୍ତି ସୁଧନ୍ୱା କରି ପ୍ରଣିପାତ
ଭୀମ ଅର୍ଜ୍ଜୁନ ଚରଣେ,—
"ବୀରଭାବେ ଯକ୍ଷ- ଅକ୍ଷ ଅସ୍ତ୍ର ଧରି
କରି କର୍ତ୍ତବ୍ୟ ପାଳନ,

ବାସନା ମୋହର ଦେଖିବାକୁ ପାର୍ଥ !
ତବ ରଥେ ନାରାୟଣ ।
କାହାନ୍ତି ତୁମ୍ଭର ସାରଥି ଶ୍ରୀହରି ?
ଚଳିବ ରଥ କପରି ?
ଆମ୍ଭ ଭାଗ୍ୟଦୋଷୁ ନ ଆସିଲେ କନ୍ତୁ
ଅଛୁ ମୁଁ ପ୍ରତିଜ୍ଞା କରି ।
ସବଳେ ତୁମ୍ଭର ସଖାଙ୍କୁ ନିଷ୍ଟୟୁ
ଅଣାଇବ ଏଥି ଆଜ ।"
ସହାସ୍ୟେ ଅର୍ଜୁନ କହନ୍ତି, "ଏକଥା
ଅସମ୍ଭବ ଯୁବରାଜ !
ତାଙ୍କ ଇଚ୍ଛା ବିନୁ କେ ତାଙ୍କୁ ଦର୍ଶନ
ପାଇବ ତିନି ଭୁବନେ,
ମୁଷ୍ଟିମେୟ ସୈନ୍ୟ ନେଇ ଆସିଅଛ
ବୃଥା ଆଶା ପୋଷି ମନେ ।
ବିଷମୟ ଫଳ ଫଳିବ ଏଥିରୁ
ଫେରାଇ ଦିଅ ଯଜ୍ଞାଶ୍ୱ,
ଅନର୍ଥକ ଯୁଦ୍ଧେ ସ୍ୱଦେଶର ଭାଇ,
କରନାହିଁ ସର୍ବନାଶ ।"
ବୋଇଲେ ପାବନ "ପରମ ଭକତ
ଅଟ ତୁମ୍ଭେ ଜେନ ଭାଇ;
ତେଣୁ ଆମ୍ଭ ଇଚ୍ଛା ନୁହେ ତୁମ୍ଭ ସଙ୍ଗେ
ସମର କରିବା ପାଇଁ ।"
ହସି ଯୁବରାଜ ଉତ୍ତରିଲେ, "ଏହି
କାପୁରୁଷୋଚିତ କଥା,

ତୁମ୍ଭ ପର କ୍ଷତି- ଦୁର୍ଯ୍ୟୋଧ ମୁଖରୁ
ଶୁଣି ଲଗେ ବଡ଼ ବ୍ୟଥା ।
ଜାଣେ ମୁହିଁ ସାର ! ବିକ୍ରମ ତୁମ୍ଭର
ମାତ୍ର ନାହିଁ ଛଳେ ଭୟ,
ଇଚ୍ଛା ମୋର ଭୀମ ଅର୍ଜ୍ଜୁନଙ୍କୁ ଆଜ
ରଣେ ଦେବ ପରାଜୟ ।
କ୍ଷତିକୁଳେ ଜନ୍ମି ଅବନତ ଶିରେ
ନ ଦେବ ଫେରାଇ ଅଶ୍ୱ,
ଇଚ୍ଛାମୟଙ୍କର ଇଚ୍ଛା ଥିବ ଯାହା
ଘଟିବ ତାହା ଅବଶ୍ୟ ।"
ଏଥୁ ଅନନ୍ତରେ ନାଦିଲା ଭୈରବେ
ଉପୁଜାଇ ବିଶ୍ୱକମ୍ପ,
ଢକ, ତୁରୀ, ଭେରୀ, ଦାମାମା ଦୁନ୍ଦୁଭି,
ରଣଶିଙ୍ଗା, ଜଗଜ୍ଝମ୍ପ ।
ରଣ ସାଙ୍କେତିକ ସେ ଧ୍ୱନି ଆରବେ
ମହାଦମ୍ଭେ ସେ ଆହବେ,
ମାତି ଦୁଇଦଳ ଆରମ୍ଭିଲେ ରଣ
ଗରଜି ଭୈରବ ରବେ ।
ରଥେ ରଥ, ଅଶ୍ୱେ— ଅଶ୍ୱ, ଗଜେ ଗଜ,
ପଦାତି ପଦାତି ସଙ୍ଗେ,
ହୋଇ ଭେଟା ଭେଟି ଶୂଳ, ଚକ୍ର, ଗଦା,
ବର୍ଚ୍ଛା ପ୍ରହାରନ୍ତି ରଙ୍ଗେ ।
ଖଡ଼୍‌ଗେ ଖଡ଼୍‌ଗ ବାଜି ଉଦ୍‌ଗାରେ ଅନଳ
ବୃଷ୍ଟି ନାରିକେଳ ପରି,

ସ୍କନ୍ଧୁ ଚ୍ୟୁତ ହୋଇ ଶତ ଶତ ଶିର
ପଡ଼ ଲେଟେ ବସୁନ୍ଧରା ।
ଶଲଭ ପରାଏ ଗଗନ ମଣ୍ଡଳ
ଆବରି ଚ୍ଛଲଇ ଶର,
ଉଠେ ସିଂହନାଦ ସଙ୍ଗେ ଆର୍ତ୍ତନାଦ
ଘାତୁକ ଆହତଙ୍କର ।
ଘର୍ଘର ଶବଦେ ଘୂରି ରଥଚକ୍ର
ଉଦ୍‌ଗାରେ ଅନଳ କଣ,
ଅଶ୍ୱ କ୍ଷୁରାଘାତେ ଧୂଳି ଘୋଟି ନଭେ
ନ ଦଶନ୍ତ ବିକର୍ତ୍ତନ ।
ସଦ୍ୟ ରକ୍ତଧାରା ବହି କଲା ଧରା
ଶୋଣିତାକ୍ତ ଅନ୍ତଶସ୍ତ୍ର,
ସମର ଅମ୍ବରେ ଉଡ଼ିଲେ କୌତୁକେ
ମାଂସଲୋଭୀ ପକ୍ଷିଚୟ ।
ରଥଚକ୍ରେ, ଅଶ୍ୱ- କ୍ଷୁରେ, ଗଜପଦେ
ହୋଇଗଲା ଜନ୍ତାଜନ୍ତ,
ମସ୍ତିଷ୍କ, ଯକୃତ, ପ୍ଲୀହା, ଅନ୍ତ, ପିତ୍ତ,
ରକ୍ତ, କ୍ଳେଦ, ମାଂସ, ଅସ୍ଥି ।
କରାଳବଦନା ନୃମୁଣ୍ଡମାଳିନୀ
ଲୋଲଜିହ୍ୱା ବସ୍ତ୍ରାରଣୀ,
ରକ୍ତପୀତା କାଳୀ- କାଳରୂପ ଭଳି
ଦିଶିଲା ରଣମେଦିନୀ ।
ଏକାଳେ ଭୀଷଣ ଗଦା ଧରି କରେ,
ଚଢ଼ି ପ୍ରକାଣ୍ଡ ବାରଣେ,

ମନ୍ଥି ରଣାଙ୍ଗନ ମାତିଲେ ମାରୁତି
ଅଦ୍ଭୁତ ସଙ୍ଗେ ରଣେ ।
ପାର୍ଥ ମହାବୀର ସଙ୍ଗତେ ସମର
କରନ୍ତ ଯୁବରାଜନ,
କେ କାହାକୁ ବଳ ନ ପାରନ୍ତ ତଲେ
ରଣେ ସମ ବେନି ଜନ ।
ମହା କ୍ରୋଧଭରେ ଏଣେ ପ୍ରେମମୟୂ
ଶରେ କରେ ଜର୍ଜ୍ଜରିତ
ପାଣ୍ଡବ ସେନାଙ୍କୁ, ଦେଖି କର୍ଣ୍ଣପୁତ୍ର
ହେଲେ ତା ପାଶେ ଧାବିତ ।
ଦେବୀ ଶକ୍ତିବଳେ ମହା ଶକ୍ତିମନ୍ତ
ପ୍ରେମମୟୂ ସମକ୍ଷରେ
ଗର୍ଜି ବୃଷକେତୁ ଓଗାଳି ସଘନେ
ଶରଜାଳ ବୃଷ୍ଟି କରେ;
କିନ୍ତୁ ତାର ବାଣ ଏଡ଼ି ଅନାୟାସେ,
ବରଷି ସୁତୀକ୍ଷ୍ଣ ଶର,
କଲା ପ୍ରେମମୟୂ ରଥ, ସୂତ, ହୟ,
ବିଧ୍ୱଂସ କର୍ଣ୍ଣପୁତ୍ରର ।
ପଡ଼ି ଭୂତଳରେ ଆକୁଳ ଅନ୍ତରେ
ବସି ବୃଷକେତୁ ଖରେ,
ତଡ଼ବଡ଼େ ଉଠି ପଳାଇବା ପାଇଁ
ଭାବେ ମରଣ ଭୟରେ ।
ହସି ତାକୁ ପ୍ରେମ କହେ, "ଆରେ ଶିଶୁ !
ଦେଲି ତୋତେ ଛାଡ଼ି ଆଜ,

କୁଳରକ୍ଷା ପାଇଁ କୁଳାଙ୍ଗାର ! ହେଣୁ
ରଖିଅଛୁ ଅଙ୍ଗରାଜ ।"
ଏଣେ ବେନି ବୀର ପ୍ରଦ୍ୟୁମ୍ନ, ସୁରଥ
ମହାରୋଷେ ଘନ ଘନ,
ମହାରଣେ କରୁ- ଛନ୍ତି ପରସ୍ପରେ
ତୀକ୍ଷ୍ଣ ବାଣ ବରଷଣ ।
କାଟିଲେ ସୁରଥ ସୁତୀକ୍ଷ୍ଣ ସାୟକେ
ଧନୁର୍ଗୁଣ ସୁରଥର,
ପଲକ ମଧ୍ୟକେ ଆନ ଧନୁ ହସ୍ତେ
ନେଇ ନୃପତିକୁମର,
ଅତି କ୍ରୋଧଭରେ ପ୍ରଦ୍ୟୁମ୍ନଙ୍କୁ ଖରେ
ବିନ୍ଧିଲେ ବୀରହିତୟୀ,
ଶେଷରେ ପଡ଼ିଲେ ମୁହୂର୍ତ୍ତେ ମୂର୍ଚ୍ଛିତ—
ହୋଇ ରୁକ୍ମିଣୀତନୟ ।
ଦେଖି ତାଙ୍କ ଦଶା ଅଦୂରୁ ସାତ୍ୟକି
ବୃଷକେତୁ କୋପଭରେ,
ମହା ପ୍ରଜ୍ୱଳିତ ହୋଇ, ବାଣ ବୃଷ୍ଟି
କରନ୍ତି ସୁରଥ ପରେ ।
ଏଣେ ଚେତା ଲଭି ପ୍ରଦ୍ୟୁମ୍ନ ସୁରଥେ
ବିନ୍ଧନ୍ତି ଅସଂଖ୍ୟ ଶର,
ନ ହୋଇ କାତର ପ୍ରତି ଶରେ ତାହା
ନିବାରନ୍ତି ବୀରବର ।
ତାହା ଦେଖି ପ୍ରେମ- ମୟୀ ରୋଷଭରେ
କହେ ଭୀଷଣ ଗର୍ଜନେ,

ଦୂରୁ ଡାକ "ନ୍ୟାୟ- ଅନ୍ୟାୟ ସମର
ନ ଜାଣ କି ଦୁରାତ୍ମନେ !
ଧର୍ମରାଜଙ୍କର ହୋଇ ଅନୁଚର
ଆରେ କାପୁରୁଷଗଣେ !
ସର୍ବେ ମିଳି କରି ପିଶାଚ ପରାଏ
ବାଳକକୁ ଆକ୍ରମଣ ।"
କହି ପ୍ରେମମୟ ଚକ୍ରାକାରେ ନୃପ
ଠାଣି କରେ ଶରବୃଷ୍ଟି,
ବୀରସପ୍ତଙ୍କର ଅଙ୍ଗରୁ ରୁଧିର
ବହି ପଡ଼େ ଶର ଫୁଟି ।
ହୋଇ ବିଭୂଷିତ ପ୍ରେମର ନିକ୍ଷିପ୍ତ
ସୁତୀକ୍ଷ୍ଣ ନାରାଚଚୟ,
କୁପିତ ଶଲ୍ଲକୀ ପରି ରଣଭୂମେ
ଭ୍ରମନ୍ତି ବୀରହିତୟ ।
ବିଦ୍ୟୁତ୍ ପରାଏ ରଣାକାଶେ ପ୍ରେମ
କେବେ ଚଢ଼ି ରଥବରେ,
କେବେ ଅଶ୍ୱେ, କେବେ ଆରୋହି ମାତଙ୍ଗେ
ଶରଜାଲ ବୃଷ୍ଟି କରେ ।
ମହାମାୟା ମହା- ଶକ୍ତିଧାରୀ ପ୍ରେମ
ସହିତେ ସମ୍ମୁଖରଣେ,
ନ ରହି ଅଥୟେ, ଇତସ୍ତତଃ ଭୟେ
ପଳାଇଲେ ସୈନ୍ୟଗଣେ ।
ସୈନ୍ୟଭଙ୍ଗ ଦେଖି ଆସିଲେ ମାରୁତ
କରି ଘୋର ଗରଜନ,

ଦେଖି ତାଙ୍କୁ ପ୍ରେମ କହେ "ଗୋଟା କେତେ
କୌରବେ କରି ନିଧନ,
ମଣିଛ ନିଜକୁ ମହାବୀର ବୋଲି,
ଆସ ଆସ ବୃକୋଦର;
ଦେଖିବି ମୈନାକ- ପାହାଡ଼ ଦେହରେ
କେତେ ଶକ୍ତି ତୁମ୍ଭେ ଧର ।"
କୋପେ ପ୍ରକମ୍ପିତ ହୋଇ ବାତସୁତ
ପ୍ରେମର ପରୁଷ-ଘୋଷେ,
ଭୀଷଣ ମୁଦ୍‌ଗର କରେ ଧରି ବୀର
ଧାବିତ ହେଲେ ତା ପାଶେ ।
ଆରୋହି ପ୍ରଳୟ ବଜ୍ରାନଳ ପ୍ରାୟ
କଷାନ୍ତ ଘନବାହନ;
ଭୀମ ଉଡ଼ି ଦେଇ ପ୍ରଚଣ୍ଡେ ଘୂରାଇ
ଗଦାବର ଘନ ଘନ,
ତରାଟି ନୟନ ଅଧରେ ରଦନ
ଚାପି ପବନ ନନ୍ଦନ,
ପ୍ରହାରି ପ୍ରଚଣ୍ଡେ କଲେ ଚୂର୍ଣ୍ଣ ଖଣ୍ଡେ
ପ୍ରେମମୟର ସ୍ୟନ୍ଦନ ।
ରଥ, ସୂତ, ଅଶ୍ୱ ହୁଅନ୍ତେ ବିଧ୍ୱସ୍ତ
ପ୍ରେମମୟ ପ୍ରଜ୍ୱଳିତ,
ମତ୍ତ ମତଙ୍ଗଜ ଡରେ ପଶୁରାଜ
ଶିଶୁ ହୁଏ କି ଶଙ୍କିତ !
ମହା ରୋଷଭରେ ବଜ୍ରସମ ଶରେ
ପ୍ରହାରିଲା ମାରୁତିରେ,

ମାଳଧନୁ ଶଶୀ ଯଚ୍ଚ ଗନ୍ଧୁଁ ଖସି
ପଡ଼ିଲେ ଭୀମ ମଧ୍ଯରେ ।
ହର୍ଷେ ସିଂହନାଦ କରି ପ୍ରେମମୟୁ
ବାନ୍ଧିଲ ଭୀମଙ୍କୁ ଖଟରେ ।
ଚେତା ଲଭି ବୀର ହେଲେ ହତବୀର୍ଯ୍ୟ
ବାଳକ ପରାକ୍ରମରେ ।
କହେ ପ୍ରେମ, "ଭୀମ ! ଛାଡ଼ ଅହଙ୍କାର
ହେଲଣି ବନ୍ଦୀ ଏଥର,
ଜଣାଗଲ ତବ ବୀରତ୍ବ ଗରିମା
ପ୍ରାଣଭିକ୍ଷା ଏବେ କର ।"
ଦୁର୍ନିବାର ଯୋଦ୍ଧା ବୀର ଗର୍ବେ ମହା-
ଗର୍ବୀ ପବନନନ୍ଦନ,
ବାଳକେ ଲଞ୍ଛିତ ହୋଇ ଅଭିମାନେ
ଭାଷନ୍ତି ଗିର ଏସନ—
"ଏ ଜୀବନେ ଭୀମ କେବେହେଁ କାହାର
ହୋଇ ନାହିଁ ପଦାନତ,
ଏହି ଅଭିମାନ ଭୁଟାଅ ବାଳକ !
ସତ୍ବର କରି ନିହତ ।
ସତ୍ବରେ ଭୀମର ବନ୍ଧନ ମୋଚନ
କରି, ପ୍ରେମ ଯୋଡ଼ି କର
କହେ, "ଏ ଅଜ୍ଞାନ ବାଳକର ଦୋଷ
କ୍ଷମ ବୀର ବୃକୋଦର !
ସହସ୍ର ସହସ୍ର ଦୁର୍ବୃତ୍ତେ ଯେ ହସ୍ତ
କରିଛି ଦଣ୍ଡ ପ୍ରଦାନ,

ଯେଉଁ ହସ୍ତେ ଖର୍ବ ହେଲ ମହାପାପୀ
ଦର୍ମ୍ମୀ ଦୁର୍ଯ୍ୟୋଧନ-ମାନ,
ଯାର ବଳେ ଧର୍ମ- ରାଜ୍ୟ ସଂସ୍ଥାପନ
କଲେ ମହାରାଜ ଧର୍ମ,
ସେ ହସ୍ତ ବନ୍ଧନ କଲ ମୁଁ ପାପିଷ୍ଠ
ମହାମୂର୍ଖ ନରାଧମ ।''
କହି ପ୍ରେମମୟ ପଡ଼ିଲ ଚରଣେ
ଦେଖି ତାକୁ ତୋଳି ଧରି
ବିସ୍ମୟେ ବିମୂଢ଼େ କହନ୍ତ ପାବନି
ସ୍ନେହ ସମ୍ଭାଷଣ କରି,—
ଅପୂର୍ବ ବାଳକ କିଏ ତୁମ୍ଭେ ବୀର !
ଧରିଛ କି ଛଦ୍ମବେଶ ?
ତବ ଦତ୍ତ ଅପ- ମାନକୁ ମୋହର
ନାହିଁ ମନେ ଦୁଃଖ ଲେଶ ।
ବାଳକ ହେଲେହେଁ ତୁମ୍ଭର ଚରିତ
ଗୌରବ ହିମାଦ୍ରି ସମ,
ତୁମ୍ଭ ସଙ୍ଗେ ଶତ୍ରୁ- ଭାବ କରି ମନେ
ଲଭେ ଯନ୍ତ୍ରଣା ବିଷମ ।
ପ୍ରାଣଭିକ୍ଷା କରି ତୁମ୍ଭଠାରୁ ମୁହିଁ
ଯାଉଛି ସନ୍ତୁଷ୍ଟ ମନେ;
ପ୍ରତିଜ୍ଞା ମୋହର ରଣ ଶେଷଯାଏ
ନ ଆସିବି ରଣାଙ୍ଗନେ ।''
ଦୂରେ ଯୁଝୁଥିଲେ ଅର୍ଜ୍ଜୁନ, ଭୀମର
ପରାଜୟ ବାର୍ତ୍ତା ପାଇ

ସାତ୍ୟକି ପ୍ରଦ୍ୟୁମ୍ନ ବୃଷକେତୁ ସଙ୍ଗ
ଆସିଲେ ସେଠାକୁ ଧାଇଁ ।
ଦେଖି ଧନଞ୍ଜୟ ସ୍ନିଗ୍ଧକାନ୍ତରୂପ
ବାଳକ ପ୍ରେମମୟୂର
ଚମକୁଚେ ହୃଦୟ ପଚାରନ୍ତି ତାଙ୍କୁ
ହୋଇଣ ଉତ୍କଣ୍ଠାଭର,—
"ପରମ ସୁନ୍ଦର ବୀରର ଆଦର୍ଶ
କିଏ ସେ ତୁମ୍ଭେ ବାଳକ ?"
କହେ ପ୍ରେମ, "ମୁହିଁ ଅଟେ ପାଣ୍ଡବଙ୍କ
ଗରବଖର୍ବକାରକ ।
ସୁଧନ୍ୱାର ଶିଷ୍ୟ ନାମ ପ୍ରେମମୟୂ
ବାହୁବଳେ ବୃକୋଦରେ
କଲି ଏଥୁଁ ଦୂର, ଆସିଛ କି ପାର୍ଥ !
ଯୁଝିବାକୁ ମୋ ସଙ୍ଗରେ ?
ବୃଥା ମରଣକୁ ନ କର ବରଣ
ଯାଅ ଏଥୁଁ ଦୂରମ୍ମନ !
ଆଜ ରଣାନଳେ ଦେବ ପୂର୍ଣ୍ଣାହୁତି
ଯଜ୍ଞାଶ୍ୱେ କରି ନିଧନ ।"
ପ୍ରେମମୟୂ ଗିରି ଶୁଣି କୋପଭର
ବୀରେନ୍ଦ୍ର ଇନ୍ଦ୍ରନନ୍ଦନ,
ନୁହେ କି ଅସହ୍ୟ ମୃଗେନ୍ଦ୍ର ପକ୍ଷରେ
ମହାମୃଗ ଅସ୍ଫାଳନ !
ପୂର୍ଣ୍ଣାହୁତି ପ୍ରାପ୍ତ ଜ୍ୱଳନ ପରାଏ
ହୋଇ ପାର୍ଥ ପ୍ରଜ୍ୱଳିତ

କହନ୍ତି, "ଏହାକୁ ମାର, ଦସ୍ୟୁ, ଧର୍ମ
ସ୍ନେହ ନ କରି କଞ୍ଚିତ ?"
ପାର୍ଥବାକ୍ୟେ ସଙ୍ଗେ ବିକଟ ଉଲ୍ଲାସେ
ଗୁଞ୍ଜି ଭୀଷଣ ହୁଙ୍କାର,
ସେ ପ୍ରେମମୟୀର ଚଉପାଶେ ବେଢ଼ି
କରି ଧନୁରେ ଟଙ୍କାର,
ଶ୍ରାବଣର ବାରି- ଧାରାପାତ ପରି
ବରଷନ୍ତି ତୀକ୍ଷ୍ଣଶର,
ମାତ୍ର ତାହା ସବୁ ଛେଦି ପ୍ରତିବାଣେ
ପ୍ରେମମୟୀ ଏକେଶ୍ୱର,
ଘୁରାଇ ଘୁରାଇ ନାରାଚ ପେଷଇ
ଧନୁ ଓଟାରି ଆକର୍ଣ୍ଣ,
ଅଦୂରୁ ସୁଧନ୍ୱା ସ୍ୱୟଁ କହେ, "ଧନ୍ୟ !
ଧନ୍ୟ ପ୍ରେମମୟୀ ଧନ୍ୟ !"
ବିପର୍ଯ୍ୟସ୍ତ ଯେହ୍ନେ କରଇ ଗଗନେ
ପ୍ରଭଞ୍ଜନ ମେଘମାଳେ,
ତେସନ ପାଣ୍ଡବ ସଇନ ସରବ
ପୀଡ଼ି ତୀକ୍ଷ୍ଣ ଶରଜାଳେ,
ଚକ୍ରବ୍ୟୂହ ମଧ୍ୟେ ଅଭିମନ୍ୟୁ ପରି
ଶତ୍ରୁଙ୍କୁ କରି ଅଥୟ,
ଅସଂଖ୍ୟ ପଦାତି ତୁରଙ୍ଗମ ହସ୍ତୀ
ବିନାଶିଲା ପ୍ରେମମୟୀ ।
ପ୍ରେମକୁ ସହାୟ ହେଲେ ଏହି କାଳେ
ଅଭିଜିତ ଧାଇଁଆସି,

କରି ଶରବୃଷ୍ଟି ଚତୁରଙ୍ଗ ବଳ
ବହୁତ ହେଲେ ବନାଶି ।
ବାଛୁ ଖିଷ୍‌ଣ ଶର ବକ୍ଷେ ପ୍ରେମମୟୂ
ମୂର୍ଚ୍ଛିଗଲେ କର୍ଣ୍ଣପୁତ୍ର,
ତା ଦେଖି ସେଠାରୁ ସତ୍ୱରେ ସ୍ୟନ୍ଦନ
ନେଇ ପଳାଇଲା ସୂତ ।
ଆନ ଏକ ଶରେ ପକାଇଲା ଧାରି
ଶ୍ୱେତବାହନଙ୍କୁ ରଥେ,
ତାହା ଦେଖି ଭୟେ ପଳାନ୍ତି ସାତ୍ୟକି
ପ୍ରଦ୍ୟୁମ୍ନ ସମରପଥେ ।
କାଳାନ୍ତକ କାଳ ପ୍ରାୟୂ ଅଭିଜିତ
ପ୍ରେମ ଗୋଡ଼ାଇ ପଛରେ
ଶତ ଶତ ବୀର ପଦାତି, କୁଞ୍ଜର
ବିନାଶନ୍ତି କୋପଭରେ ।
ଦେଖି ତାହା ମହା- ବୀର ସବ୍ୟସାଚୀ
କରି ଘୋର ଗରଜନ,
ଧାଇଁଲେ ଗାଣ୍ଡୀବ କାର୍ମ୍ମୁକେ ଟଙ୍କାର
ଦେଇ ରୋଷେ ଘନ ଘନ ।
ଏକାଳେ ପାର୍ଥଙ୍କୁ ପଥ ଅବରୋଧି
ବୀର ସିଂହ ଯୁବରାଜ
ବୋଇଲେ, "ଫାଲ୍‌ଗୁନ ! ଭାଳିଛ କା ସୈନ୍ୟେ
ବୀରତ୍ୱେ ରଖିବ ଆଜ ?"
ଅର୍ଜ୍ଜୁନ— ଗୁଡ଼ାକେଶ ପଥ, କ୍ଷଣେ ରହ ବୀର
ଅଭିଜିତ ପ୍ରେମମୟୂ,

ଶରେ ନପୀଡ଼ିତ ହୋଇ ଇତସ୍ତତଃ
ପଳାନ୍ତି ସୈନିକଚୟ ।
ସୁଧନ୍ୱା— ଡାକ ତବ ପ୍ରିୟ ସଖା ଶ୍ରୀକୃଷ୍ଣଙ୍କୁ,
ନୋହିଲେ ନସ୍ତାର ନାହିଁ ।
ତାଙ୍କ ବିନୁ ନାହିଁ ଶକତି କାହାର
ତୁମ୍ଭଙ୍କୁ ରକ୍ଷିବା ପାଇଁ ।
ଅର୍ଜୁନ— ସମ୍ମୁଖ ସମରେ ମଲେ ଜଗତରେ
ରହିବ ଅକ୍ଷୟ ଯଶ,
ସେଥିପାଇଁ ଭୟ ନାହିଁ, ମୁଢ଼ ପଥ
ହେଲେ ସୈନ୍ୟବଳ ଧ୍ୱଂସ ।
ସୁଧନ୍ୱା— ଆଗେ ତୁମ୍ଭ ମୃତ୍ୟୁ ହେଲେ, ପଛେ ହେବେ
ସଇନବଳ ବିନାଶ,
କି ଅବା ତାହାଙ୍କୁ କରିବେ ରକ୍ଷଣ
ଦୟାମୟ ପୀତବାସ ।
ଅର୍ଜୁନ— କାପୁରୁଷ ହୀନ ନୁହନ୍ତି ପାଣ୍ଡବେ
ଭଲକି କି ମନେ ବୀର !
ରୁଦ୍ରଜୟୀ ପାର୍ଥ ପଳାଇବ ତବ
ଭୟରେ ହୋଇ ଅଧୀର ?
ଏଥୁ ଅନ୍ତେ ପାର୍ଥ ବିଜୟ ଗାଣ୍ଡିବେ
ଯୋଚ ନକ୍ଷେପିଲେ ଶର,
କଟାକ୍ଷେ ସେ ଶର ପକାଇଲେ କାଟି
ଯୁବରାଜ ବୀରେଶ୍ୱର ।
ନାରାଚ ସନ୍ଧାନ କରି ଯୁବରାଜ
କହନ୍ତି ଅର୍ଜୁନେ ଚାହିଁ,

"ଡାକ ଶ୍ରୀକୃଷ୍ଣଙ୍କୁ ନ ଡାକଲେ ପାର୍ଥ !
ଆଉ ଏଥୁ ରକ୍ଷା ନାହିଁ ।"
ସାସ୍ୱର ଶାଣିତ ସୌଦ୍ରବ୍ୟ ଶାୟକ
ବଲ୍ମୀକେ ଭୁଜଙ୍ଗ ପରି
ଭେଦନ୍ତେ ଅର୍ଜ୍ଜୁନ ବକ୍ଷରେ, ଆତୁରେ
ଡାକନ୍ତି "ହାୟ ଶ୍ରୀହରି !
ଘଲଥିଲ କ ହେ ଭଦ୍ରାବତୀପୁରେ
କରାଇ ଅର୍ଜ୍ଜୁନେ ଧ୍ୱଂସ,
ଯଜ୍ଞ ଅସମ୍ପୂର୍ଣ୍ଣ ରହିବ, ଉଦ୍ଧାର
ନ କରାଇ ଯଜ୍ଞ ଅଶ୍ୱ !
କାହିଁ ଅଛ ସଖା ! ଦିଅ ବାରେ ଦେଖା,
ଅନ୍ତିମ କାଳେ ଦାସକୁ,"
କହି ମୂର୍ଚ୍ଛାଗତ ହୋଇ ଧନଞ୍ଜୟ
ଢଳିପଡ଼ନ୍ତୁ ଭୂତଳକୁ—
ଆବିର୍ଭୂତ ହୋଇ ସହସା ଶ୍ରୀକୃଷ୍ଣ
ଧଇଲେ କୋଳରେ ଟେକି,
"ଭୟ ନାହିଁ ସଖା ! କି ଭୟ ଜଗତେ
ଅଛି ମୁଁ ତୁମ୍ଭର" ବୋଲି ।
ନବୀନ ନୀରଦ ଶ୍ୟାମଘନ ରୂପ
ବିଲୋକି ଅର୍ଜ୍ଜୁନ ରଥେ,
ପୁଲକେ ପୂରିତ ହୋଇ ଯୁବରାଜ
ଆରମ୍ଭିଲେ ଯୋଡ଼ହସ୍ତେ—
"କପରି ପଳାଇ ଆସିଲ ହେ ହରି !
ଭୃତ୍ୟ ଆରତ୍ତ ନ ସହି !

ତୁମ୍ଭ ପ୍ରତି ରତ ହୁଅନ୍ତେ କି ଭକ୍ତେ
ନ ଥିଲେ ଏ ଗୁଣ ବନ୍ଧୁ ?
ଦୟାମୟ ! ବଜେ- କଲ ଭକ୍ତବାଞ୍ଛା
କରିବାକୁ ପରିପୂର୍ଣ୍ଣ,
ନୋହିଲେ କି ମୋର କଳରେ ଲଭନ୍ତେ
ପରାଭବ ଅରଜୁନ ?
ଜାଣେ ମୁହିଁ ହରି ! ପାର୍ଥ ଲାଗି ଏକା
ନୁହେଁ ତବ ଆଗମନ,
ସମାନ ତୁମ୍ଭଙ୍କୁ ଅର୍ଜ୍ଜୁନ, ସୁଧନ୍ୱା,
ସୁରଥ, ବୃଦ୍ଧ ରାଜନ ।
ଭକତ ଗୌରବ ବଢ଼ାଇବା ପାଇଁ
ଏ ଲାଞ୍ଛନା ଅର୍ଜ୍ଜୁନର,
ଭକତ ଉଦ୍ଧାର ପାଇଁ ଆବିର୍ଭୂତ
ହେଲ ଏଥି ଦାମୋଦର !"
ଏତେ କହି ଶର ଥୋଇ ଧନୁଗରେ
ସାଷ୍ଟାଙ୍ଗେ କଲେ ପ୍ରଣାମ,
ହସି କୃପାସିନ୍ଧୁ ବୋଇଲେ "ରେ ବତ୍ସ !
ପୂର୍ଣ୍ଣ ହେଉ ମନସ୍କାମ ।"
ସସ୍ମିତେ ସୁଧନ୍ୱା କହନ୍ତି "ମୋ ଇଷ୍ଟ
ହେଲାଣି ମୋତେ ପ୍ରାପତ
କାଲ ପରିପୂର୍ଣ୍ଣ ହେବ ଦେବ ତବ
ଆଗମନ ମନୋରଥ ।
ବାଞ୍ଛା-କଳ୍ପତରୁ ଅପାର କୃପାରୁ
ହେଲା ମୋର ବାଞ୍ଛା ସିଦ୍ଧି,

ସନ୍ଧ୍ୟା ସମାଗତ ହେଲାଣି ବିଦାୟ
ନେଉଛୁ କରୁଣାନିଧି !"
ପ୍ରେମେ ପୁଲକିତ ହୋଇ ଯୁବରାଜ
ଶିବିରେ କଲେ ଗମନ,
ଅସ୍ତାଚଳେ ରବି କରନ୍ତେ ଗମନ
ନିବର୍ତ୍ତିଲା ଘୋର ରଣ ।

---

## ସପ୍ତମ ସର୍ଗ

ନିସ୍ତବ୍ଧ ରଜନୀ ନିସ୍ତବ୍ଧ ଅବନୀ,
ନିସ୍ତବ୍ଧ ଗାଢ଼ ନିଦ୍ରାରେ
ସୁଧନ୍ୱା ସୁରଥ ଅଭିଜିତ ସହ
ସୈନ୍ୟଗଣ ସ୍କନ୍ଧାବାରେ ।
ସେ ଘୋର ଯାମିନୀ ଗାମ୍ଭୀର୍ଯ୍ୟ ମାତର
ଭାଙ୍ଗିଦେଇ ଥରେ ଥରେ,
କେବେ ନୂପୁରହର୍ଷେ, କେବେ ଅବା କର
ଶ୍ରମ ଦ୍ୱନ୍ଦ୍ୱ ପରସ୍ପରେ,
ବିକଟାଳ ରଙ୍ଗ ଘନ ଘନ ଗୁଣ୍ଡ
ଅଦୂରେ ସମରାଙ୍ଗନେ,
ରୁଧିର ପାରଣା କରୁଛନ୍ତି ଭ୍ରମି
ଶୃଗାଳ କୁକ୍କୁରଗଣେ ।
ଭଦ୍ରାବତୀ ଭାଗ୍ୟ ଭବିଷ୍ୟ ଅକ୍ଷର-
ମାଳିକା ପରି ଗଗନେ

ଜ୍ୟୋତର୍ଲୋକ-ବର୍ତ୍ତି ତାରକାପଙ୍କତି
ନିରେଖି ସ୍ଥିର ନୟନେ,
ଏକା ପ୍ରେମମୟୀ ଧନୁର୍ବାଣ ହସ୍ତେ
ଜଗିଛି ଶିବିରଦ୍ୱାର,
ଭବିଷ୍ୟ ଚିନ୍ତାରେ ଅଶେଷ ଭାବନା
ଉଠୁଛି ହୃଦୟେ ତାର ।
ବିଶ୍ୱରେ, "କୁମାରେ ରକ୍ଷା କରିବାକୁ
ନାହିଁ ଆଉ ପ୍ରତିକାର,
କୃଷ୍ଣଙ୍କ ବିରୋଧେ କରିବାକୁ ଯୁଦ୍ଧ
ଶକତି ଅଛି କାହାର !
ଭରସା ମାତର ରହିଛି ଏତିକ,
ବୈଷ୍ଣବୀ ଶକ୍ତି ହରଣ
ନ ହୋଇବା ଯାଏ କୁମାରେ ବିନାଶି
ନ ପାରିବେ ନାରାୟଣ !
ଆଜ ସେହି ଶକ୍ତି ଚକ୍ରଧର ଚକ୍ରେ
ହେବ ନିଶ୍ଚେ ଅପହୃତ,
ସେଥିପାଇଁ ହରି ଭଦ୍ରାବତୀପୁରେ
ହୋଇଛନ୍ତି ଆବିର୍ଭୂତ ।"
ଶଙ୍କାକୁଳ ହୋଇ ବୀର ପ୍ରେମମୟୀ
ଭାବୁଅଛି ଏହିମତେ,
ଏସନ କାଳରେ ହେଲେ ଆବିର୍ଭୂତ
ସହସା ତାର ଅଗ୍ରତେ ।
କୃଷ୍ଣଙ୍କ ଆଦେଶେ ତ୍ରୈଲୋକ୍ୟମୋହିନୀ
ବେଶେ ମାୟାକନ୍ୟାମାନେ

କହନ୍ତ ପ୍ରେମକୁ— ଛାଡ଼ ପଥ ଯିବୁ
କୁମାରଙ୍କ ସନ୍ନିଧାନେ ।
ଆମ୍ଭେମାନେ ନଗ୍ର- ବ ସିଙ୍ଘ ନର୍ତ୍ତକୀ
ନୃପତି ବେନ କୁମାର
ଛାମୁକୁ ଆସିଛୁଁ ନୃତ୍ୟଗୀତ କରି
ନେବୁ ବୋଲି ପୁରସ୍କାର ।"
କହେ ପ୍ରେମ, "ଶ୍ରାନ୍ତ — କ୍ଳାନ୍ତ ରାଜପୁତ୍ରେ
ଅଛନ୍ତ ଗାଢ଼ ନିଦ୍ରିତ,
ଆଜ ଯାଅ ଫେରି, କାଲି ଆସି ସର୍ବେ
କରିବ ଗୋ ନୃତ୍ୟ ଗୀତ ।
ପୁରସ୍କାର ଲୋଭେ ଆସିଅଛ ଯେବେ
ନିଅ ଏ ରତନହାର,
ଏ ନିଶୀଥ କାଳେ ଶିବରେ ଯିବାକୁ
ଛାଡ଼ିଦେବି ନାହିଁ ଦ୍ୱାର ।"
ଶୁଣି ପ୍ରେମବାଣୀ ସେ ମାୟାତରୁଣୀ
କହନ୍ତ "ହେ ବୀରବର !
କେବଳ ଏ ଧନ ନେଲେ କି ପୂରଣ
ହେବ ଅଭିଷ୍ଟ ଆମ୍ଭର ?
ଜଣାଗଲା ଏବେ ଆଦରସ ଜ୍ଞାନ
ଲଭେନ୍ତି ନାହିଁ ତୁମ୍ଭର,
ଦିଅ ପଥ ଛାଡ଼ି ଯିବୁଁ ଶିବିରକୁ
କର ନାହିଁ ହରବର ।"
ହସି ଏହା ସର୍ବେ ହୁଅନ୍ତେ ଉଦ୍ୟତ
ଶିବିରକୁ ଯିବାପାଇଁ,

ଧନୁର୍ଗୁଣେ ଶର ଯୋଚ ପ୍ରେମମୟୁ
କହେ ତାଙ୍କୁ କୋପେ ଚାହିଁ,—
"ଯେବେ ଜୀବନର ଆଶା ଅଛୁ ଏଥୁ
ଯାଅ ଶୀଘ୍ରେ ଅପସରି;
ନହୁବା ଏ କ୍ଷଣ ଶରେ ସମସ୍ତଙ୍କୁ
ପ୍ରେରିବି ଯମ ନଗରୀ ।"
"କିଏ ଏ ଦୁର୍ଦ୍ଧର୍ଷ କରିବ ବିନାଶ
ଚାଲ ଗୋ ଯିବା ପଳାଇ;"
କହି ଅନ୍ତର୍ହିତ ହେଲେ କନ୍ୟାଗଣ
ଶିବ ମଣେ ପ୍ରେମ ଚାହିଁ ।
ଭଲେ ମାୟାଧର ମୋତେ ମାୟାମୁଗ୍ଧ
କରାଇ ଶକ୍ତି ହରଣ
କରିବାକୁ ପେଶି ଥିଲେ ପରା ଏହି
ମାୟା-ବାରାଙ୍ଗନାଗଣ;
ମାତ୍ର ମୁଁ ଯାବତ ରହିଛୁ ସଜ୍ଜାନେ
ଜଗି ସ୍କନ୍ଧାବାରଦ୍ୱାର,
ତାବତ ସେ ଶକ୍ତି ହରଣେ ଶକତ
ହୋଇ ନ ପାରେ ମାୟାର ।"
ମାୟାରାଜ ରାଣୀ ଆବିର୍ଭୂତ ହେଲେ
ଏହିକାଳେ ପ୍ରେମ ପାଶେ,
ଚମତ୍କାର ଚିତ୍ତେ ପ୍ରେମମୟୁ ତାଙ୍କୁ
ଚାହେଁ ବିସ୍ମୟେ ଉଦାସେ ।
କହେ ମାୟାନୃପ, "କିପାଁ ଏଥି ବିଧ !
ବସିଛୁ ଏତେ ରାତ୍ରରେ,

ଗୁଲ ବାପଧନ ଶିବିରକୁ ଯିବା
ଦେଖିବ ପୁତ୍ରଙ୍କୁ ଥରେ ।
ସବନଙ୍କେ ପ୍ରେମ କହେ, "ଅପରାଧ
କ୍ଷମା କର ନରେଶ୍ୱର !
ଆଜ ରାତ୍ରେ କେହ୍ନି ନ ଯିବେ ଶିବିରେ
ଆଦେଶ କୁମାରଙ୍କର ।"
କହେ ମାୟୂନୃପ "ଏତେ ସ୍ପର୍ଦ୍ଧା ତୋର ?
କରୁଛୁ ମୋତେ ବାରଣ ?
ସଦା ପାଳନୀୟ ରାଜାଦେଶ ବୋଲି
ନ ଜାଣୁ କି ଦୁରାତ୍ମନ ?
ନୁହେ ମୁଁ ଇତର; ସ୍ୱୟଂ ନରବର
ପଶିବି ଶିବିରେ ବଳେ,
ଦେଖାଯାଉ ତୋର କି ସାହସ ଅଛି
ରୋଧିବାକୁ ମୋତେ ବଳେ ।"
ଶୁଣି ପ୍ରେମମୟ କହେ ଦର୍ପଭରେ
"ସାବଧାନ ମହାରାଜ !
ଏହ୍ନି ହସ୍ତସ୍ଥିତ ଅସିର ନ ହେଉ
ଅସଦ୍‌ବ୍ୟବହାର ଆଜ ।
ତବାଦେଶ ସଦା ଅଲଙ୍ଘ୍ୟ ହେଲେହେଁ
ଏ ରଣଭୂମେ ସମ୍ପ୍ରତ
କୁମାର ଆଦେଶ ପାଳନୀୟ, ଯେଣୁ
ଅଟନ୍ତି ସେ ସେନାପତ !
ପ୍ରହରୀସ୍ୱରୂପ ଜଗିଛି ମୁଁ ଦ୍ୱାର
ତାଙ୍କ ଆଦେଶାନୁଯାୟୀ

ହେଲେ ଅଗ୍ରସର ଅଚିରେ ତୁମ୍ଭଙ୍କୁ
କରିବ ଅବନିଶାୟୀ ।”
“କାଲି ପ୍ରତିଶୋଧ ପାଇବୁ ଏଥିର
ଥାଅ ଆଜକ ନିଶ୍ଚିନ୍ତେ,”
କହି ଅନ୍ତର୍ହିତ ହେଲ ମାୟାନୃପ
ମାୟା-ରାଣୀର ସହିତେ ।
ଏକାଳେ ଅଦ୍ଭୁତେ ଶୁଭିଲ ଅଦୂରେ
ରମଣୀ ବିଳାପଧ୍ୱନି,
ଧ୍ୱନି ଲକ୍ଷ୍ୟ କରି ଚଳିଦ୍ଵେଗେ ପ୍ରେମ
ବୁଝିଁ ଅଦଭୂତ ମଣି,
ବିଚାରଇ, “କିଏ ଏ ଘୋର ନିଶୀଥେ
କାନ୍ଦଇ ଏତେ ବିକଳେ,
ନାହିଁ ନାହିଁ ମାୟା ଛଳନା ଏ ମୋତେ
ଭଣ୍ଡିବାକୁ କଉଶଳେ ।”
ଏହିପରି ମନେ ଚିନ୍ତି ଚିନ୍ତି ପ୍ରେମ
ପ୍ରଭାବତୀ ବେଶ ଧରି
ପାଶେ ତାର ମାୟା ହୋଇ ଉପଗତ
ପୁଚ୍ଛଇ ବିଳାପ କରି,—
“ସତ କରି ମୋତେ କହ ପ୍ରେମ ଭାଇ
ପତିଙ୍କ କୁଶଳ କଥା,
ଅମଙ୍ଗଳ ସ୍ୱପ୍ନ ଦେଖି ପ୍ରାଣେ ମୋର
ହେଉଛି ବିଷମ ବ୍ୟଥା ।”
କହେ ପ୍ରେମମୟୂ, “ମିଥ୍ୟା ସ୍ୱପ୍ନ, ଦେବି !
ଯାଅ ଫେରି ହଂସପୁରେ,

କୁମାରଯୁଗଳ ନିଶ୍ଚିନ୍ତେ ଶୟନ
କରିଅଛନ୍ତୁ ତମ୍ବୁରେ ।"
ମାୟା ପ୍ରଭାବତୀ କହେ "ଥରେ ପଥ
ଛାଡ଼ିଦିଅ ପ୍ରେମମୟୀ !
ପତିଙ୍କ ଶ୍ରୀମୁଖ- କମଳ ନ ଦେଖି
ବୁଝୁଅଛି ମନ ଅଥୟି ।"
କହେ ପ୍ରେମମୟୀ "କରି ରଣଜୟ
ଫେରିଲେ ନୃପନନ୍ଦନ,
କରିବ ବିଜୟ- ଲକ୍ଷ୍ମୀବିମଣ୍ଡିତ
ମୁଖପଦ୍ମ ଦରଶନ ।
ନ ଛାଡ଼ିବି ଦ୍ୱାର, ଯୁବରାଜ ଯେଣୁ
ଆଦେଶ କରିଅଛନ୍ତି,
ଅଦ୍ୟ ରଜନୀରେ ଶିବିରକୁ କେହି
ନ ଯିବା ପାଇଁକି ସତି !"
ଏ ନିଦାରୁଣ ବାଣୀ ମାୟା ପ୍ରଭାବତୀ
ଶୁଣି କାନ୍ଦି ଉଚ୍ଚୈଃସ୍ୱରେ,
"ଆଜ ଜି ନାଥଙ୍କୁ ନ ଦେଖିବି," କହି
ଅଦୃଶ୍ୟ ହେଲା ସତ୍ୱରେ ।
ଏ କାଳେ ସହସା ବିଲୋକିଲା ପ୍ରେମ
ବ୍ୟାପି ଭୀଷଣ ଅନଳ
କରୁଅଛି ଦଗ୍ଧ ଯୁବରାଜଙ୍କର
ସେନାନିବେଶ ସକଳ ।
ହାହାକାର କରି ସୈନିକଜନକର
ଧାଉଁଛନ୍ତି ଇତସ୍ତତଃ,

ପାଣ୍ଡବଙ୍କ ସୈନ୍ୟେ ଅହମି ତାହାଙ୍କୁ
କରୁଛନ୍ତି ବ୍ୟତିବ୍ୟସ୍ତ ।
ଦେଖି ପ୍ରେମମୟୂ କୋପେ ଧନୁ ଧରି
ହୋଇ ପଡ଼େ ଅଗ୍ରସର,
ପୁଣି କ୍ଷୁବ୍ଧ ମନେ ଶିବିର ଦ୍ୱାରକୁ
ଫେରି ଆସିଲ ସତ୍ୱର ।
କହେ, "ଯା ହେବାର ହେଉ ମୁଁ କଦାପି
ନ ଛାଡ଼ିବି ଏହି ଦ୍ୱାର,
ପ୍ରତାରିତ କରି ମୋତେ ନେବାକୁ ଏ
ଛଳନା ନର୍ତ୍ତେ ମାୟାର ।
ଆସିଛୁ ବୈଷ୍ଣବୀ- ମାୟା ମୋତେ ଦୂରେ
କରି ନେଇ ଆକର୍ଷଣ,
ବୈଷ୍ଣବୀ ଶକତି କୁମାରଙ୍କଠାରୁ
କରିବ ବୋଲି ହରଣ ।
ଭୀଷଣ ନିନାଦ ଅଲକ୍ଷିତ କରି
ଦେଖାଉଛୁ ମୋତେ ଭୟ,
ନର୍ତ୍ତେ ତାକୁ ଧ୍ୱଂସ କରିବ ଏଥର
କଲଣି ବଡ଼ ଅଥୟ ।"
ଏତେ ବୋଲି ଧନୁ ଧରି ପ୍ରେମମୟୂ
କହେ ଭୀଷଣ ଗର୍ଜନେ,
"ଶୁଣ ମାୟା ! ଏହି ବ୍ରହ୍ମାସ୍ତ୍ର ମୁଁ ଆଜ
ନଯୋଜିଲି ଶରାସନେ;
କାହାରି ଶକତି ଅଛି ରୋଧିବାକୁ
ମୋର ଏ ଅବ୍ୟର୍ଥ ଶର ?

କେଜ୍ଜ ତୋତେ ରକ୍ଷା କରି ନ ପାରିବେ
ନିଜେ ଆତ୍ମରକ୍ଷା କର;”
କହି ଊର୍ଦ୍ଧ୍ୱମୁଖେ ହୁଅନ୍ତେ ଉଦ୍ୟତ
ଶିର ତ୍ୟାଗ କରିବାକୁ
ସହସା ଅପୂର୍ବ ସନ୍ନ୍ୟାସୀଏ ହସ୍ତ
ଧରି ନିବାରିଲେ ତାକୁ ।
ମହାମାୟା ମହା- ଶକ୍ତିକି ବୈଷ୍ଣବୀ-
ଶକ୍ତି ନ ପାରିବା ଜାଣି
ସନ୍ନ୍ୟାସୀ ରୂପରେ ସ୍ୱୟଂ ଆବିର୍ଭୂତ
ହୋଇଛନ୍ତି ଚକ୍ରପାଣି ।
ନବୀନ ନୀରଦ ଦିବ୍ୟ ଜ୍ୟୋତିର୍ମୟ
ପ୍ରଶାନ୍ତ କାନ୍ତ ମୂରତି,
କପଟ ସନ୍ନ୍ୟାସୀ ପ୍ରେମମୟ କର
ଧରି ମଧୁରେ କହନ୍ତି,—
“କି କର ! କି କର ! ସମ୍ବର ଏ ଶର
ଧ୍ୱଂସ ହେବ ବିଶ୍ୱମୟ,
କ୍ଷାନ୍ତ ହୁଅ ବୀର ! ନିକ୍ଷେପିଲେ ଏହା
ପଲକେ ହେବ ପ୍ରଳୟ ।”
ବିସ୍ମୟେ ଆପ୍ଲୁତ ହୋଇ ପ୍ରେମମୟ
ସେ ଦିବ୍ୟ ରୂପ ଦର୍ଶନେ,
“କିଏ ତୁମ୍ଭେ ଦେବ ! କାହିଁ ଯାଅ”, ବୋଲି
ପୁଚ୍ଛେ ବିନୟ ବଚନେ ।
କହନ୍ତି ଶ୍ରୀକୃଷ୍ଣ “ସନ୍ନ୍ୟାସୀ ମୁଁ ବତ୍ସ !
ଯହିଁ ଯାହା ପ୍ରୟୋଜନ

ହୁଏ ଯେତେବେଳେ, ସେ ସ୍ଥାନକୁ ମୂର୍ଚ୍ଛି
କରେ ଗମନାଗମନ ।
ଆସିଥିଲ ଏଥି ଦେବାକୁ ଆଶିଷ
ରାଜକୁମାର ଯୁଗଳେ,
ସହସା ତୁମ୍ଭର ବ୍ରହ୍ମାସ୍ତ୍ର ପ୍ରୟୋଗ
ଦେଖି ଧରିଅଛୁ ବଳେ ।
ଛାଡ଼ ଏବେ ଦ୍ୱାର ଯିବ ଶିବିରକୁ"
ଶୁଣି କହେ ପ୍ରେମମୟୀ,
"ସମ୍ପ୍ରତି ନିଦ୍ରିତ ଅଛନ୍ତି ଶିବିରେ
ନୃପତି କୁମାରଦ୍ୱୟୀ ।
ତାଙ୍କ ବିନାଦେଶେ ନ ପାରିବି ଛାଡ଼ି
ଶିବିର ଦ୍ୱାର ତୁମ୍ଭଙ୍କୁ,
ଶୁଣି ଅଳ୍ପ ହସି କପଟ ସନ୍ନ୍ୟାସୀ
କହନ୍ତି ପ୍ରେମମୟୀଙ୍କୁ,—
"ନୁହେଁ ମୁଁ ତସ୍କର; ନୁହେଁ ଗୁପ୍ତଚର
ଅଟେ ଭିକ୍ଷୁକ ସନ୍ନ୍ୟାସୀ;
ଛାଡ଼ ଦ୍ୱାର ଯିବ କୁମାରଙ୍କ ପାଶେ
ଭିକ୍ଷା ପାଇଁ ଅଛୁ ଆସି,"
କହୁଁ କହୁଁ ବସ୍ତ୍ରୁ ତେଜେ ପ୍ରେମମୟୀ
କରାଇଲେ ଅଚେତନ,
ଉନ୍ମାପସ ପ୍ରାୟେ କମ୍ପେ କମ୍ପେ ପ୍ରେମ
ଭୂତଳେ ହେଲା ପତନ ।
ଶିବିର ଭିତରେ ପଶି ଭବଗ୍ରାହୀ,
ଦେଖିଲେ ଭକତଦ୍ୱୟୀ,

ନନ୍ଦା ପରିହରି ବସିଛନ୍ତି ଧ୍ୟାନେ,
ତାଙ୍କ ପଦେ ରଖି ଲକ୍ଷ୍ୟ ।
ଭକ୍ତଗତ ପ୍ରାଣ ଭକତ ଅଧୀନ
ଭକତବତ୍ସଳ ହରି,
ଉଭା ହେଲେ ଯାଇ ସମ୍ମୁଖେ ତାଙ୍କର
କଳପ ପାଦପ ପରି ।
ଯୁଗଳ ପଲକ ମୁଦ୍ରିତ ବିମୁଗ୍ଧେ
କରି କ୍ଷଣେ ନିରୀକ୍ଷଣ
ଧ୍ୟାନଗୋଚରରେ ବେନ ଭକତଙ୍କୁ
ଦେଖା ଦେଲେ ନାରାୟଣ ।
ଶ୍ୟାମ ନଟବର- ଛବି ଧ୍ୟାନ ଯୋଗେ
ଦର୍ଶନ ଲଭି ଉଲ୍ଲାସେ,
ବେନ ଭକ୍ତ କଲେ ସାଷ୍ଟାଙ୍ଗ ପ୍ରଣାମ
ଗଳଲଗ୍ନୀକୃତ ବାସେ,
ପ୍ରଣାମାନ୍ତେ ଉଠି ଅଗ୍ରତେ କୃଷ୍ଣଙ୍କୁ
ଦେଖି ସୁଧନ୍ୱା ବିସ୍ମୟେ
ପୁଚ୍ଛନ୍ତି, "ହେ ଦେବ ! କିଏ ତୁମ୍ଭେ କର୍ପା
ଆସିଛ ଏ ଅସମୟେ ?"
ବୋଇଲେ ଶ୍ରୀକୃଷ୍ଣ, "ଅଟେ ମୁଁ ଜନୈକ
ଭିକ୍ଷୁକ ଉଦାସୀ ଜନ,
ଆସିଅଛୁ ତବ ପାଶେ ବିଶେଷରେ
ହୋଇବାରୁ ପ୍ରୟୋଜନ ।
ବହୁ ତୀର୍ଥ ଭ୍ରମି ଆଜ ସାୟଂକାଳେ
ଆସିଛୁ ଏ ନଗରକୁ,

ଏହି ନଗରୀ ଶେଷେ     କରିବ ପ୍ରୟାଣ
ପବିତ୍ର ବ୍ରହ୍ମତୀର୍ଥକୁ ।
ବହୁ ଅନ୍ୱେଷଣ     କରି ମୁଁ ତୁମ୍ଭର
ଲଭିଲି ଏଥି ସାକ୍ଷାତ,
ଦିଅ କିଛି ଭିକ୍ଷା     ପରମ ଭକତ
ଅଟେ ତୁମ୍ଭେ ବେଦଜ୍ଞାତ ।"
ବୋଇଲେ କୁମାର     "ଏ ତ ଯୁଦ୍ଧକ୍ଷେତ୍ର
ନାହିଁ ଏଥି କିଛି ଧନ,
କି ଭିକ୍ଷା ତୁମ୍ଭଙ୍କୁ     ଦେଲେ ଦ୍ୱିଜବର !
ହୋଇବ ସନ୍ତୁଷ୍ଟ ମନ ?"
କହନ୍ତି ଶ୍ରୀକୃଷ୍ଣ     "ଅଟେ ମୁଁ ସଂସାର-
ବିରାଗୀ ଉଦାସୀ ଜନ,
ନ ଇଚ୍ଛଇ ଧନ,     ଧନରତ୍ନେ ମୋର
କିବା ଅଛି ପ୍ରୟୋଜନ ?"
"କି ଭିକ୍ଷା ଆପଣ     ଇଚ୍ଛନ୍ତି ?" କୁମାର
ପୁଚ୍ଛନ୍ତେ କହନ୍ତି ହରି,
"ବାଞ୍ଛିତ ପଦାର୍ଥ     ଦେବ ଯେବେ ମୋତେ
କହ ବୀର ସତ୍ୟ କରି ।"
"ଯା ମାଗିବ ମାଗ     ଦେବ କଲି ସତ୍ୟ"
କଲେ ସୁଧନ୍ୱା ଉତ୍ତର
ବୋଇଲେ ଶ୍ରୀକୃଷ୍ଣ     "ଦିଅ ବେନି ଭାଇ
କବଚ ବେନି ତୁମ୍ଭର ।"
ଚକିତେ କପଟ     ବିପ୍ରଙ୍କ ମୁଖକୁ
ସ୍ତବ୍ଧେ ନିରୀକ୍ଷଣ କରି

ବେନଇ ଉଭୟ ହେଲେ ଯୁଗ୍ମକରେ
କବଚଯୁଗଳ ଧରି ।
କହନ୍ତି ସୁଧନ୍ୱା "ନଅ ନଅ ପ୍ରଭୁ !
ସୁଧନ୍ୱା ସୁରଥ ପ୍ରାଣ,
ଏହି ପ୍ରାଣ ନେଇ କର ତବ ପ୍ରିୟ-
ସଖା ଅର୍ଜ୍ଜୁନର ତ୍ରାଣ ।
ପ୍ରାଣର ଅଭାବ ପଡ଼ିଛି ତୁମ୍ଭଙ୍କୁ
ଆସିଅଛ ସେଥିପାଇଁ
ଉଦାସୀନ ବେଶେ ଏ ପ୍ରାଣ ହରଣେ
ଏ କଣିଥେ ଭାବଗ୍ରାହୀ !
ସୁଧନ୍ୱ ସୁରଥ ଦ୍ୱାରେ ଭିକ୍ଷାପ୍ରାର୍ଥୀ
ହୋଇଅଛ ନାରାୟଣ !
ନଅନ୍ତୁ ସ୍ୱଚ୍ଛନ୍ଦେ ତବ ପଦ୍ମପାଦେ
କରୁଅଛୁ ସମର୍ପଣ ।"
ବୋଇଲେ ଶ୍ରୀହରି କବଚକୁ ଧରି
"ବତ୍ସ ! ସୁଧନ୍ୱା ସୁରଥ !
ମୋର ଇଚ୍ଛାବଳେ ହୁଅନ୍ତି ସକଳେ
କର୍ମପଥେ ଗତାଗତ ।
ହର୍ତ୍ତା କର୍ତ୍ତା ମୁହିଁ ଅଟେ ସବୁ କାର୍ଯ୍ୟେ,
'ଦୁଃଖ ଆଜ କ କାରଣେ ?
କର୍ମ ସ୍ରୋତେ ଦେହ ଟାଳ ଦିଅ; ଅର୍ପି
ସର୍ବସ୍ୱ ମୋର ଚରଣେ ।"
କହୁ କହୁଁ ଏହା ସନ୍ୟାସୀବିଗ୍ରହ
ପରିହରି ନାରାୟଣ

ଭକତ ମାନସ ରଞ୍ଜନାର୍ଥେ କଲେ
ପୂର୍ଣ୍ଣ ମୂରତ ଧାରଣ ।
ଇନ୍ଦ୍ରନୀଳମଣି ଜିଣି ତନୁଶୋଭା,
କଟୀତଟେ ପୀତାମ୍ବର,
ଶ୍ରୀବତ୍ସଲାଞ୍ଛିତ ବକ୍ଷେ ବନମାଳା
କଉସ୍ତୁଭ ମଣିବର,
କସ୍ତୁରୀ ତିଳକ ଲଲାଟପଟରେ
ଶ୍ରୀଭୁଜେ ବେଣୁ କଙ୍କଣ,
ସୁଲଳିତ କଣ୍ଠ- ଦେଶେ ମୁକ୍ତାବଳୀ,
ସର୍ବାଙ୍ଗେ ହରିଚନ୍ଦନ,
ନାସାଗ୍ରତେ ବର- ମୌକ୍ତିକ, ଶ୍ରବଣେ
ଦୋଳେ ମକର କୁଣ୍ଡଳ,
କମଳେ ଭୃଙ୍ଗାଳୀ ପ୍ରାୟେ ଶୋଭେ ଝଳ
ସୁନୀଳ ଚୂର୍ଣ୍ଣ କୁନ୍ତଳ,
ଶ୍ରୀଅଙ୍ଗରୁ ପ୍ରଭା ସ୍ଫୁରି ସ୍କନ୍ଧାବାର
ହୁଏଶେ ନୀଳକାନ୍ତମୟ,
ଦେଖି ବେନି ଭକ୍ତ ଯୁକ୍ତକରେ ସ୍ତବ
କରନ୍ତି ହୋଇ ତନ୍ମୟ—
"ତୁମେ ଆଦିଦେବ ଅନନ୍ତ ସ୍ୱରୂପ
ସକଳ ଲୟର କାମ୍ୟ; ✳
ପୁରାଣ ପୁରୁଷ ତୁମ୍ଭେ ଏ ବିଶ୍ୱର
ଜ୍ଞାତବ୍ୟ ପରମ ଧାମ;

---

✳ ଅଶ୍ୱିଷ୍ଟଦାୟକ

ତୁମ୍ଭେ ଏହି ବିଶ୍ୱେ          ସର୍ବତ୍ର ବିଜୟୀ
କରିଅଛ ସର୍ବମୟୀ,
ତୁମ୍ଭେ ସୂର୍ଯ୍ୟ, ସୋମ,          ବାୟୁ, ଅଗ୍ନି, ଯମ,
ପ୍ରଜାପତି ପିତାମହ ।
ଆହେ ସର୍ବେଶ୍ୱର !          ନମୁଅଛୁ ପଦେ
ସହସ୍ର ସହସ୍ର ବାର,
ପାର୍ଶ୍ୱେ, ପଶ୍ଚାତରେ          ପୁନଃ ପୁନ ଜରେ
ଚତୁର୍ଦ୍ଦିଗେ ନମସ୍କାର;
ତୁମ୍ଭର ମାହାତ୍ମ୍ୟ          ପରାକ୍ରମ କେହି
ନାହାନ୍ତି କଳନା କରି,
ଅନନ୍ତ ବ୍ରହ୍ମାଣ୍ଡେ          ବ୍ୟାପିଅଛ ତୁମ୍ଭେ
ଅନନ୍ତ ସ୍ୱରୂପ ଧରି,
ସର୍ବରୂପୀ ବୋଲି          ସର୍ବେ ତବ ନାମ
କରନ୍ତି ସଦା କୀର୍ତ୍ତନ;
ହେ ଅତୁଳନୀୟ-          ପ୍ରଭାବ ! ହେ ଦେବ
ଏକ ମାନବ ଆପଣ ।
ସ୍ଥାବର ଜଙ୍ଗମା-          ତ୍ମକ ଜଗତର
ପିତା, ଗୁରୁ, ଗରୀୟାନ
ନୟୁଁଲୋକେ ତବ          ତୁଲ୍ୟ କେ ନାହାନ୍ତି
ପ୍ରଭାବସମ୍ପନ୍ନ ଆନ ।
ହେ ଅନାଦି ଦେବ !          ଦଣ୍ଡ ପରି ତବ
ଶ୍ରୀମୁରେ ହୋଇ ପତନ
କରି ପ୍ରଣିପାତ          କରୁଛି ଜଣାଣ
ହୁଅ ଏ ଦାସେ ପ୍ରସନ୍ନ ।

ପିଅର ପୁତ୍ରର, ଭର୍ତ୍ତା ବନଚାର,
ମିତ୍ରର ମିତ୍ର ଯେପରି,
ଅପରାଧ ସହ୍ୟ କରନ୍ତି ମୋ ଦୋଷ
ମାର୍ଜନା ହେଉ ସେପରି ।"
ସ୍ତବ କରୁ କରୁ ବେନ ଭ୍ରାତା ଧ୍ୟାନେ
ରହିଲେ ହୋଇ ନିଶ୍ଚଳ,
ମର୍କତଶିଖରି ପାଦପ୍ରାନ୍ତେ କି ସେ
ସୁବର୍ଣ୍ଣ ଅଦ୍ରି ଯୁଗଳ !
ଏଣେ ଚେତା ଲଭି ପ୍ରେମମୟୀ ମନେ
ବଡ଼ୁରଇ ହୋଇ କ୍ଷୁବ୍‌ଧ,
"କେଣେ ଗଲା ସେହି ମାୟାବୀ ସନ୍ନ୍ୟାସୀ
କରି ମୋତେ ମାୟାମୁଗ୍‌ଧ !
ନିଶ୍ଚୟ ବୈଷ୍ଣବୀ- ଶକ୍ତି ଆଜ ହରି
ନେଲେ ମାୟାବଳେ ହରି
ଏତେ ଚେଷ୍ଟା ବୃଥା ହେଲା କୁମାରଙ୍କୁ
ନ ପାରିଲି ରକ୍ଷା କରି !"
ଶୀଘ୍ରରୁ ଆଗତ କପଟ ଦ୍ୱିଜଙ୍କୁ
ଏକାଳେ ଦେଖି ନୟନେ
କୋପେ ବିକମ୍ପିତ ହୋଇ ପ୍ରେମ ତାଙ୍କୁ
ବାନ୍ଧିଲା ଯାଇ ସଘନେ ।
କହେ "ଆରେ ଧୂର୍ତ୍ତ ! ଦସ୍ୟୁବୃତ୍ତି କରି
କିସ କରିଛୁ ହରଣ
ଦେଖାଅ ସତ୍ୱର" ଶୁଣି ପ୍ରେମଗିର
କହନ୍ତି ଛଦ୍ମବ୍ରାହ୍ମଣ,-

"ନୁହେଁ ମୁହିଁ ଚୋର, ଯାଚକ ଭୂସୁର
କରନ୍ତେ ଭିକ୍ଷା ପ୍ରାର୍ଥନା
ଏ କେଣ ପଦାର୍ଥ ଦାନ କଲେ ମୋତେ
ପ୍ରୀତେ ସୁରଥ, ସୁଧନ୍ୱା ।
ଧର୍ମାଧର୍ମ ଜ୍ଞାନ ନାହିଁ କି ତୁମ୍ଭର ?
ଦଣ୍ଡୁଛ ବିପ୍ରକୁ ଧରି,
ବଡ଼ ବ୍ୟଥା ହୁଏ ଏ ବନ୍ଧନ ଘୋର !
ଫେଡ଼ିଦିଅ ଦୟାକରି !
ସେ ବୋଲେ, "ଯଦ୍ୟପି ପ୍ରକୃତ ଭିକ୍ଷୁକ
ଅଟ ତୁମ୍ଭେ ଦ୍ୱିଜବର ।
ସୁଧନ୍ୱା ସୁରଥ ତୁଲେ ସ୍ୱର୍ଣ୍ଣ ନେଇ
ଏହାକୁ ପ୍ରଦାନ କର ।
ନ ଦେଲେ ଫେରାଇ ନ ଛାଡ଼ିବ ମୁହିଁ
ହେଉ ପଛେ ମହା ପାପ,
ଅଥବା ଅନନ୍ତ ନରକେ ପଡ଼ିଚ
ହୁଏ ଲଭି ବ୍ରହ୍ମଶାପ ।"
କହି ପ୍ରେମମୟ ସେ କବଚଦ୍ୱୟ
ଛଡ଼ାଇ ବଳାତକାରେ
ଯଶୋମତୀ ପରି କୃଷ୍ଣଙ୍କୁ ଧିକ୍କାରି
ବାନ୍ଧିଲ ଶିବିରଦ୍ୱାରେ ।
ଅନନ୍ତ ବ୍ରହ୍ମାଣ୍ଡ ହେଲେହେଁ ତାଙ୍କର
ମାୟାରଜ୍ଜୁରେ ବନ୍ଧନ,
ଅକ୍ଷମ ଅଟନ୍ତି କରିବାକୁ ସେହି
ଭକ୍ତବନ୍ଧନ ମୋଚନ ।

ବଳି ରାଜଦ୍ୱାରେ ବାମନ ପରାଏ
ସ୍କନ୍ଧାବାରଦ୍ୱାରେ ହରି
"ଫେଡ଼ହଅ" ବୋଲି କହନ୍ତି ପ୍ରେମକୁ
କପଟ କ୍ରନ୍ଦନ କରି ।
ପ୍ରେମର ଗର୍ଜନ ପ୍ରଭୁଙ୍କ ରୋଦନ
ପଶନ୍ତେ ସୁଧନ୍ୱା କର୍ଣ୍ଣେ
ଧ୍ୟାନ ତେଜି ବୀର ଶିବିରୁ ସତ୍ୱର
ଆସିଲେ ଚକିତ ମନେ ।
ସହସା ବନ୍ଧନ ଫେଡ଼ି ହରିଙ୍କର
କହନ୍ତି "ରେ ପ୍ରେମମୟୁ !
ଯାର ନାମେ ମାୟା ଛିନ୍ନ ହୋଇ ଦୂର
ହୁଏ କାଳଦଣ୍ଡ ଭୟ,
ଭବ-ସାଗରର ଯେହୁ କର୍ଣ୍ଣଧାର;
ତାଙ୍କୁ କରିଛୁ ବନ୍ଧନ
ଏ ଭବବନ୍ଧନ ରେ ନବୋଧ ! ତୋର
କିଏ କରିବ ମୋଚନ ?
କବଚ କପାଇଁ ନେଇଛୁ ଛଡ଼ାଇ,
ସତ୍ୱର ଦିଅ ଫେରାଇ,
ସାନନ୍ଦେ ଏ ଶକ୍ତି ହରିଙ୍କୁ ପ୍ରଦାନ
କରିଅଛୁ କେନ୍ ପାଇ ।
ତାଙ୍କର ଗଚ୍ଛିତ ଧନ ନେଲେ ସେ ତ
ହୋଇବାରୁ ପ୍ରୟୋଜନ
ଉଦାସୀନ କେଶେ, ସେଥିପାଇଁ ଆଜ
କପାଇଁ କୁଣ୍ଠିତ ମନ ?"

କୁମାର ବଚନେ କବଚଯୁଗଳ
କୃଷ୍ଣଙ୍କୁ କର ପ୍ରଦାନ,
କହେ ପ୍ରେମମୟୀ "ଏହି କଥା ମନେ
ରଖିଥାଅ ଭଗବାନ !
ସୁଧନ୍ୱା, ସୁରଥ ନୟୂନ୍ତ ପୂରଣ
ହେଲେହେ, ମୁହିଁ ତାଙ୍କର
ଦେହରକ୍ଷୀ ଅଟେଁ, ତୁମ୍ଭର ସମକ୍ଷେ
ଏହି ପ୍ରତିଜ୍ଞା ମୋହର:—
ଅଛି ମୁଁ ଜୀବିତ ସଂସାରେ ଯାବତ
ତାବତ କୁମାରଙ୍କର
କେଶାଗ୍ର ସ୍ପର୍ଶ କରିବାକୁ ସୁଦ୍ଧା
ଶକତି ନାହିଁ ତୁମ୍ଭର ।"
ଏତେ କହି ପ୍ରେମ- ମୟୀ ନୀରବରେ
ରହିଲା ଗଭୀର ଦୁଃଖେ,
କବଚକୁ ନେଇ ଚଳିଲେ ଶ୍ରୀକୃଷ୍ଣ
ପାଣ୍ଡବ ଶିବିରମୁଖେ ।
ପ୍ରେମମୟୀ ସ୍ନିହିଁ ବୋଇଲେ କୁମାର
"ନ ହୁଅ ଦୁଃଖିତ ଭାଇ !
ଶତ ଯତନରେ ଭବିତବ୍ୟ କେବେ
ଅନ୍ୟଥା ହୁଅଇ ନାହିଁ ।
ବିଭୁଙ୍କ ଇଚ୍ଛାରେ କାଳ ପ୍ରାପ୍ତ ନଷ୍ଟେ
ହେବୁଁ କାଲି ଦେନ ଭ୍ରାତ,
ଆସ ମୋ ସଙ୍ଗରେ ନଗରୀକୁ ଥରେ
ଯିବ, ଶେଷ ନୋହୁ ସାଥ ।

ମହାପ୍ରସ୍ଥାନର ସମୟରେ ଥରେ
ପରାଣ ପ୍ରେୟସୀ ସହ
ଶେଷ ଦେଖା କରି ଆସିବା ବାହୁଡ଼ି
ପ୍ରାତଃକାଳେ ପ୍ରେମମୟ ।”
ଜୀବନ ଯାମିନୀ ଶେଷ ହେବା ଜାଣି
ପ୍ରେମକୁ ଘେନି ସଙ୍ଗରେ
ଚଳିଲେ କୁମାର ରାଜଧାନୀ ମୁଖେ
ଯାମିନୀ ଶେଷଯାମରେ ।
ନିବିଡ଼ ଅନ୍ଧାର- ପାରାବାର-ବକ୍ଷ-
ପ୍ରଯାପ୍ତ-ତରଣୀ ପରି
ଭେଦି ବେନି ବୀର ଗତି କରୁଥାନ୍ତି
ଆଗପଛ ହୋଇ କରି ।
ନୀଳ ନଭୋଦେଶେ ଜ୍ୟୋତିଷ୍କନିକର
ଝୁଲୁଁଥାନ୍ତି ଜଳ ଜଳ,
କେବେ ନୀଡ଼େ ସୁପ୍ତ- ବିହଙ୍ଗ ଶିଶୁଏ
କରୁଥାନ୍ତି କୋଳାହଳ;
ନୟୂରର ଭୁରି- ଧ୍ୱନି ପରି ଶୁଭେ
ଶିବା ରଡ଼ି ଥରେ ଥରେ,
ଘୋଷେ ନିଶୀଥିନୀ ଭବନଶ୍ୱରତା
ସୁଗଭୀର ଝିଲ୍ଲୀ ସ୍ୱରେ,
କେତେବେଳେ କାଳ- ପେଚକ ବିକଟେ
ରାବ ଦେଇ ବାରମ୍ବାର
ଭଦ୍ରାବତୀ ଭାଗ୍ୟ- ସୂର୍ଯ୍ୟାସ୍ତ ବାରତା
ଜଣାଉଥାଏ ପରସ୍ପର;

ପ୍ରଭୁଭକ୍ତ ଶ୍ୱାନେ ଖଣ୍ଡେ ଦୂରୁ କରି
କୁମାରେ ପ୍ରେମେ ଲେକନ
ତସ୍କର ଭ୍ରମରେ ଉଚ୍ଚୈଃସ୍ୱରେ ଉଙ୍କ
ଘୁଡ଼ୁଛନ୍ତ ଘନ ଘନ ।
ରାଜସିଂହଦ୍ୱାରେ କରନ୍ତେ ପ୍ରବେଶ
ଯୁବରାଜ ପ୍ରେମମୟ,
ଦେଖି ଆଚମ୍ବିତେ କର ଯୋଡ଼ି ଦୂରୁ
ରହିଲେ ପ୍ରହରୀଦ୍ୱୟ ।
ପ୍ରଭାକଶୀ ପୁରେ ପଶି ଯୁବରାଜ
ଦେଖିଲେ ଶୟନାଗାରେ
ନାହାନ୍ତ ସୁନ୍ଦରୀ, ସର୍ବ ସହଚରୀ
ଅଚେତ ଗାଢ଼ ନିଦ୍ରାରେ ।
ବସ୍ତ୍ରେ ବକ୍ଷାଦେ ଇତସ୍ତତଃ ଧୀର
କରି ବହୁ ଅନ୍ୱେଷଣ
ଲକ୍ଷ୍ମୀନାରାୟଣ ମନ୍ଦିରକୁ ଗଲେ
ଶୁଣି ପ୍ରେୟସୀ ରୋଦନ ।
ଅର୍ଜ୍ଜୁନ ରଥରେ କୃଷ୍ଣଙ୍କୁ ଦର୍ଶନ
କଲାବେଳକୁ ପ୍ରଭାବତୀ—
ଫାଟି ଯାଇଅଛି ହୃଦୟ ତାଙ୍କର
ହରାଇ ଧୈର୍ଯ୍ୟ ଶକତି
ସଦ୍ୟଧୃତ ମୃଗୀ ପ୍ରାୟ ମୂହୁର୍ମୁହୁ
ଥରୁଛନ୍ତି ଅବିରତ,
ଫୁଲିଅଛି ଶିଶୁ- ସାରଙ୍ଗ ଲୋଚନ
ଲୋତକ ମୁହୁର୍ନିରତ ।

ଅବରୋଧ ମଣ୍ଡା-　　ହସ୍ତରେ ମଶକ
ପଡ଼ିଏ ହୋଇ ବିକଳ,
ପତି ଦରଶନ　　ଆଶେ ପଥ ଚାହିଁ
ରହିଅଛନ୍ତି କେବଳ ।
ଦେଖି ଏହି ରୀତି　　ପାଇ ମହାଭୀତି
ସଖୀମାନେ ତାଙ୍କୁ ନେଇ
ଶୟନ ସଦନେ　　ରହିଲେ ଜାଗ୍ରତ
ବହୁତ ପ୍ରବୋଧ ଦେଇ ।
ନିଶା ଶେଷ ଯାମେ　　ହୁଅନ୍ତେ ନିଦ୍ରା ତା
ସଖୀଗଣ ଅନାୟତ୍ତେ
ଲକ୍ଷ୍ମୀନାରାୟଣ　　ମନ୍ଦିରକୁ ସଙ୍ଗେ
ଗମିଲେ ଅତି ଆରତେ ।
ସ୍ୱର୍ଣ୍ଣ ସିଂହାସନେ　　ଯୁଗଳ ମୂରତି
କିବା ମନମୋହକାରୀ !
ନିରେଖି ବକ୍ଷୋଜ　　ଲୋଟାଇ ମହୀରେ
କାନ୍ଦୁଅଛନ୍ତି ସୁନ୍ଦରୀ ।
ଗଦ ଗଦ ଭାଷେ　　କହନ୍ତି, "ହେ ପ୍ରଭୁ !
ସତେ କି ଏ ଦାସୀଠାରେ
ପ୍ରିୟ ସଖାର୍ଜୁନ　　ପ୍ରିୟ ଅର୍ଥେ ଆଜ
ଦୟା ନ କରିବ ବାରେ ?
ସତେ କି ହେ ପ୍ରଭୋ !　　ହେବ କାଲି ଅସ୍ତ
ଭଦ୍ରାବତୀ ସୁଖରବି ?
ସତେ କି ଦେଖିବି　　ନାହିଁ ନାଥଙ୍କର
ବିଜୟ ବାହୁଡ଼ା ଛବି ?

ଆହା ! ଏତେବେଳେ                    କେ ଆଣି ଦଅନ୍ତା
ମୋ ପାଶେ ପ୍ରାଣେଶ୍ୱରଙ୍କୁ !
ପ୍ରାଣଭରି ଥରେ                    ନରେଖି ପିପାସା
ମେଣ୍ଟାନ୍ତି ଚିରକାଳକୁ !
ଶ୍ରୀଚରଣ ଧୂଳି                    ଦଗ୍ଧଦେହେ ବୋଳି
କରନ୍ତି କୃତାର୍ଥ ଜୀବ !
କିନ୍ତୁ ଏହି ସିନା                    ଅଭାଗିନୀ ଭାଗ୍ୟେ
ତାହା କି ସତେ ଘଟିବ ?"
ଘୋର ଘର୍ମତାପେ                    ତାପିତା ମୟୂରୀ
ଶୁଣେ ଯଥା ଘନସ୍ୱନ
ସହସା ତେସନ                    ଶୁଣିଲେ ସୁନ୍ଦରୀ
ପତିଙ୍କ ମଧୁବଚନ—
"ସଖୀ ଶିରୋମଣି                    ଅଟ ତୁମ୍ଭେ ପ୍ରିୟେ !
ତବ ଶେଷ ଅଭିଳାଷ
ହେବ ନିଶ୍ଚେ ପୂର୍ଣ୍ଣ,                    ସଦା ସଖୀମାନ
ରଖନ୍ତି ଯେଣୁ ଶ୍ରୀବାସ ।"
ସଚକିତେ ଉଠି                    ଦେଖି ପ୍ରଭାବତୀ
ଅଗ୍ରତେ ପରାଣେଶ୍ୱରେ
ଚରଣେ ପ୍ରଣତ                    ହୋଇଲେ ଏସନ
ଭାଷି ଗଦଗଦ ସ୍ୱରେ,—
"ମୋହର କାମନା                    କରିବାକୁ ପୂର୍ଣ୍ଣ
ସତେ କି ଆସିଲ ? ନାଥ !
ଆସ, ଆସ, ପଦ-                    ଧୂଳି ଏ ଦାସୀକି
ଦେଇ କର ଚରିତାର୍ଥ ।"

ସଜଳନୟନେ ବସିଅଛୁ ପ୍ରେମ
ମନ୍ଦିର ଦ୍ୱାରଦେଶରେ
ସଜଳନୟନେ ପ୍ରିୟାଙ୍କୁ କୁମାର
କହନ୍ତି ଚୋଳ ସ୍ୱରରେ,—
"ପଦତଳେ ଆଜ କାହିଁକି ସୁନ୍ଦରୀ
ଲୋଟୁଛ ଅଜ ଏପରି ?
ଆସ, ଇହଜନ୍ମ- ଲାଗି ତୃପ୍ତ ହେବ
ତୁମ୍ଭଙ୍କୁ ବକ୍ଷରେ ଧରି !
ବିଦାୟ ନେବାକୁ ଆସିଅଛୁ ପ୍ରିୟେ !
ସାନନ୍ଦେ ବିଦାୟ କର,
ଏ ଶୁଭ ସମୟେ କାହିଁପାଇଁ ଆଜ
ହୁଅ ଗୋ ଏତେ କାତର ?
କାନ୍ଦିବା ପାଇଁକି ବହୁ ଅବସର
ପାଇ ପାରିବ ଗୋ ସତି !
ମାତ୍ର ନ ପାଇବ ଏ ମିଳନ ଆଜ
ପ୍ରାଣାଧିକା ପ୍ରଭାବତି !
ଦୁଇ ଦିନ ପାଇଁ ତୁମ୍ଭଙ୍କୁ ନେଇ ଏ
ମର୍ତ୍ତ୍ୟ ଧାମେ ସ୍ୱର୍ଗରାଜ୍ୟ
ପ୍ରତିଷ୍ଠିତ କରି- ଥିଲି, ସେହି ସ୍ୱପ୍ନ
ଭାଙ୍ଗିଗଲା ମୋର ଆଜ ।
ଆଜଠାରୁ ମୋର ହୋଇଲା ନିର୍ମୂଳ
ସବୁ ସ୍ନେହ ସୁଖ ଆଶ
ଆଜ ଆତ୍ମ ଶକ୍ତି- କବଚ ଶ୍ରୀକୃଷ୍ଣ
ହରିଲେ ଇଚ୍ଛି ବିନାଶ ।

ମହାପ୍ରସ୍ଥାନରେ ସମସ୍ତ ମୋହର
ହୋଇଲା ସମୁପାଗତ,
ଥିବ ତୁମ୍ଭେ ମାତ୍ର, ଯିବେ ମୋର ସଙ୍ଗେ
ତାତ, ଜନନୀ, ସୁରଥ ।",
ଜଳଦ ଦର୍ଶନେ ତୃଷିତା ଚାତକୀ
ସହସା ବଜ୍ର ପତନେ
ଦୁଅଇ ଯେପରେ, ହୋଇ ସେହିପରେ
ଯୁବରାଜଙ୍କ ବଚନେ,
ବାଷ୍ପରୁଦ୍ଧ କଣ୍ଠେ ବୋଇଲେ ସୁନ୍ଦରୀ—
"କେଉଁ ଦୋଷେ ପ୍ରାଣେଶ୍ୱର !
ସମସ୍ତଙ୍କୁ ସଙ୍ଗେ ଘେନ ଏ ଦାସୀକି
ବରଜ ଯିବ ତୁମ୍ଭର ?
ଶୟନେ, ସ୍ୱପନେ, ଶ୍ରବଣେ, ବଚନେ,
ଆସ୍ୱାଦେ, ସ୍ପର୍ଶେ, ଆଘ୍ରାଣେ,
ସର୍ବମୟ ତୁମ୍ଭେ ଅଟ ମୋର ନାଥ !
ରହିବ କପରେ ପ୍ରାଣେ ?"
ବୋଇଲେ କୁମାର "ତୁମ୍ଭେ ଗଲେ ପ୍ରିୟେ !
ଭଦ୍ରାବତୀ ରାଜବଂଶ
ପୈତୃକ ଶୋଣିତ ହୋଇବ ଆମ୍ଭର
ଚିରକାଳ ପାଇଁ ଧ୍ୱଂସ ।
ବିଭୁଙ୍କ କୃପାରେ ପୂର୍ବ ପୁଣ୍ୟବଳେ
ଅଟ ତୁମ୍ଭେ ଗର୍ଭବତୀ
ଦିବ୍ୟଜ୍ଞାନେ ମୋତେ ଏ କଥା ଗୋଚର
ହୋଇଅଛି ପ୍ରଭାବତୀ !

ଏହି ଗର୍ଭୁଁ ଜାତ ହେବ ଦିବ୍ୟ ସୁତ
ସର୍ବ ଲକ୍ଷଣସମ୍ପନ୍ନ,
କରିବ ଉଜ୍ଜ୍ୱଳ ଭବିଷ୍ୟତେ ଉତ୍ରା-
ବତୀ ରାଜ ସିଂହାସନ ।
କର୍ତ୍ତବ୍ୟାନୁରୋଧେ ରହି ତୁମ୍ଭେ ରକ୍ଷା
କର ଏ ରାଜକୁମାର,
ମୋର ବଂଶ ରଖି ଉତ୍ରାବତୀ ରାଜ୍ୟ-
ଆକାଶ ନିର୍ମ୍ମଳ କର ।"
କହେ ପ୍ରଭାବତୀ, "ଏପରି ନିଷ୍ଠୁର
କପାଁ ହୁଅ ଦାସୀଠାରେ ?
କେଉଁ ସୁଖ ଆଶେ ରହିବି ମୁଁ ଏହି
ଯନ୍ତ୍ରଣାମୟ ସଂସାରେ ?
କିପରି ରହିବି ମୁରୁଛି ତୁମ୍ଭର
ପ୍ରଶାନ୍ତ ପୂତ ବଦନ ?
କିପରି ଭୁଲିବି ନାଥ ହେ ! ତୁମ୍ଭର
ମଧୁମୟ ସମ୍ଭାଷଣ ?
କେତେ କାଳ ନାଥ ! କରିବି ମୁଁ ଏହି
କଠୋର ବ୍ରତ ପାଳନ ?
କେତେ କାଳ ନାଥ ! ବହିବି ମୁଁ ଏହି
ଘୋର ଦଗ୍ଧ ଜୀବନ ?"
ବୋଇଲେ କୁମାର, "ନାହିଁ କିଛି ସୁଖ,
ମାନବ କର୍ତ୍ତବ୍ୟ କର୍ମ
ରହିଛି ସମ୍ମୁଖେ ନ ପାଳିଲେ ତାହା
ନଷ୍ଟ ହେବ ସବୁ ଧର୍ମ ।

ସେହ୍ନ ଅଧର୍ମରେ ପିତୃଗଣ ସହ
ହେବ ନରକେ ପତିତ,
ପତିବ୍ରତା ତୁମ୍ଭେ ପତିର ଆଦେଶ
ଲଙ୍ଘିବାର ଅନୁଚିତ ।
ଅଳ୍ପଦିନ ପାଇଁ ଏଥିମାଝେ ରହି
ଏହି ସମର ଶେଷରେ
କୁବଳୟା ସହ ରାଜ୍ୟ ରକ୍ଷାଭାର
ଦେଇ ଅଭିଜିତ କରେ,
କିଛିକାଳ ନବ- ଜାତ ନନ୍ଦନର
କରି ଲାଳନପାଳନ,
ବିଶୁଦ୍ଧ ଚିତ୍ତରେ ବିଭୁପଦ ଚିନ୍ତି
କରିବ ଦିନ ଯାପନ ।
ଯଥାକାଳେ ଗଙ୍ଗା- କୂଳେ ମହାଯୋଗେ
କରି ଦେହ ବିସର୍ଜନ
ପରଲୋକ ପଥେ ମୋ ସାଥେ ସଜନି !
ଲଭିବ ପୁଣି ମିଳନ ।
କିଛିଦିନ ପାଇଁ ବିଚ୍ଛେଦ ମାନିକ
ସହିବ ପରାଣଧନ !
ନ ହୁଅ ଅଧୀର, ପାହି ଆସିଲାଣି
ରଜନୀ, କରେଁ ଗମନ ।”
ଉଷା ହେବା ଦେଖି ପରାଣପତିଙ୍କି
ଗମନ ଉନ୍ମୁଖେ ଠାକି
“ହା ନାଥ ! ହୃଦୟେ- ଶ୍ୱର !” ବୋଲି ଉଚେ
ରୋଦି ଉଠିଲେ କିଶୋରୀ,

ବୋଇଲେ ସୁଧନ୍ୱା, "କପାଁ ଆତ୍ମହର
ହୁଅ ପ୍ରିୟେ ! ଅକାରଣେ ?
କେ ତୁହେଁ କାହାର ସର୍ବେ ଜଡ଼ୀଭୂତ
କେବଳ ମାୟାବନ୍ଧନେ ।
ନଦୀନଦ ଜଳେ ଯେ ଯାହାର ପଥ
ଚିନ୍ତି କରନ୍ତି ପ୍ରୟାଣ,
ଭବାର୍ଣ୍ଣବୁ ପାର କରଣେ କାଣ୍ଡାରୀ
ଏକମାତ୍ର ଭଗବାନ ।
ମୋର ପଥେ ଏବେ ଯାଉଅଛୁ ମୁହିଁ"
କହି, ଲକ୍ଷ୍ମୀନାରାୟଣେ
ଅନାଇ, ସୁଧନ୍ୱା ଜଣାଇଲେ କରି
ପ୍ରଣିପାତ ଶ୍ରୀଚରଣେ—
"ଆହେ ରମାକାନ୍ତ ! ଅନାଥର ନାଥ !
ତୁମ୍ଭର ସର୍ବ ସମ୍ପତ୍ତି,
ରହିଛି ଅକ୍ଷୁର୍ଣ୍ଣେ, କେବଳ ଫସାରୁ
ଯାଉଛି ମୁହିଁ ସମ୍ପ୍ରତି ।"
ଅଲଙ୍ଘ୍ୟ ନିୟତି ଜାଣି ପ୍ରଭାବତୀ
ପ୍ରିୟତମ ଦେହଙ୍କର
ଲକ୍ଷ୍ମୀନାରାୟଣ କୁସୁମ ଚନ୍ଦନେ
ମଣ୍ଡିଦେଲେ କଳେବର ।
ହରିନାମ କରି ଲେଖିନ ସୁନ୍ଦରୀ
କରେ, ଭାଲେ, ବକ୍ଷ୍ୟସ୍ଥଳେ
ଗଦ୍‌ଗଦ ବଚନେ କହନ୍ତି, ପ୍ରଣମି
ପ୍ରିୟତମ ପଦତଳେ—

"ଦାସୀର ଏ ଶେଷ- ପ୍ରଣାମ ଗ୍ରହଣ
କରନ୍ତୁ ପରାଣେଶ୍ୱର !
ଏ ପ୍ରଣାମ ସଙ୍ଗେ ନଅନ୍ତୁ ସଂସାରେ
ଯାହା ସୁଖ ଅଛୁ ମୋର ।
ମୌକ୍ତିକବହୀନ ଶୁକ୍ତି ପ୍ରାୟ ମୁହିଁ
କେବଳ କାର୍ଯ୍ୟ ତୁମ୍ଭର
ସାଧନ କରିବା- ପାଇଁ କଷ୍ଟବହ
ଥିବ ତୁଚ୍ଛ ଦେହ ଧରି ।
ଅନନ୍ତ ବୀରତ୍ୱ ଅନନ୍ତ ସୁକୃତ
ଅନନ୍ତ ପୂତତ୍ୱ ଯେନ,
ଅନନ୍ତ ଗୌରବେ ଅନନ୍ତ ଧାମକୁ
ଗମ ବୀରଚୂଡ଼ାମଣି !"
ପତିଙ୍କ ନୟନ- ଜଳରେ ପ୍ଳାବିତ
ହୋଇଗଲା ସତୀ ଶିର,
ପତିଙ୍କ ପଙ୍କଜ- ପୟର ଧଉତ
କଲା ସତୀ ନେତ୍ରନୀର,
ଉଠାଇ ଭୁଜକୁ ପ୍ରାଣ-ପ୍ରେୟସୀକି
ବକ୍ଷେ ଧରି ଯୁବରାଜ,
ବୋଇଲେ ଗଦ୍‌ଗଦେ "ଯୁଧିଷ୍ଠିରଙ୍କର
ସମର ଅନଳେ ଆଜ
ଏ ଦେହ ଆହୁତି ଦେଇ, ନିତ୍ୟଧାମେ
କରିବ ମହାପ୍ରସ୍ଥାନ,
ନାହିଁ ଯହିଁ ପାପ, ଶୋକ, ଦୁଃଖ, ତାପ,
ଈର୍ଷା ମାନ, ଅଭିମାନ;

ପ୍ରାଣାଧିକେ ! ପ୍ରାଣ- ପ୍ରଭବନ୍ତି !" ବୋଲି
କ୍ଷଣେ ରହି ନୀରବରେ
ଜନ୍ମଭୂମି ଲକ୍ଷ୍ୟେ ପ୍ରଣମି କହନ୍ତି
ପୁଣି ବାଷ୍ପରୁଦ୍ଧ ସ୍ୱରେ:—
"ତାତ, ମାତ, ଭଗ୍ନୀ, ବନ୍ଧୁ, ସହୋଦର,
ଦାସ ଦାସୀ ଆଦି କରି
ବୃକ୍ଷ ଲତା, କୀଟ, ପତଙ୍ଗ ସହିତେ
ଜନ୍ମଭୂମି ବସୁନ୍ଧରୀ !
ଜ୍ଞାନେ ବା ଅଜ୍ଞାନେ ଯା କରିଛି ଅନିଷ୍ଟ
କରିଛି ମୁହିଁ ତୁମ୍ଭର
ଆଜ ଏହି ମହା- ଯାତ୍ରାକାଳେ ସର୍ବେ
ସେ ଦୋଷକୁ କ୍ଷମା କର ।
ଯାଉଛି ପରାଣ- ସହି ! ମୋହ ରାଣ
କ୍ଷମିବ ଦୋଷ ମୋହର"
କହୁଁ କହୁଁ ଶୋକା- ବେଗେ କଣ୍ଠ ରୁଦ୍ଧ
ହୋଇଗଲା ଯୁବାଙ୍କର ।
ଜୀବନକୁ ବେନି ବେନିଙ୍କୁ ମେଲାଣି
ଦେବାର କାଳ ଘଟିନା,
କରି, ବେନିଙ୍କର ସେ କାରୁଣ୍ୟମୟ
ଚିତ୍ତବୃତ୍ତି କଳପନା ।
ବେନିଙ୍କ ଲୋତକ- ଜଳରେ ବେନିଙ୍କୁ
କରାଇ ବେନିଏ ସ୍ନାନ,
ବେନିଙ୍କର ମୁଖ ଚୁମ୍ବି ବେନି ଜଣେ
ହୋଇ କ୍ଷଣେ ମୂହ୍ୟମାନ

ଅନ୍ତିମ ଅନନ୍ତ ଚୁମ୍ବନାନ୍ତେ ଯୁବା
ପୁଣି ହୋଇ ପ୍ରକୃତିସ୍ଥ
ସ୍ୱୀୟ ଅଙ୍କୁ କର ପ୍ରିୟ: ଭୁଜବଲ୍ଲୀ
ସଧୀରେ ଅପସାରିତ;
ଫେରାଇ ବଦନ ପ୍ରେମମୟ ସଙ୍ଗେ
ଚଳିଲେ ମହାପ୍ରସ୍ଥାନେ,
ପଡ଼ିଲେ ମହୀରେ ପ୍ରଭାବତୀ ବଜ୍ରା-
ହତ-ଲତିକା ସମାନେ ।
ଜାଇଁ ଆସୁଥିଲା କୁଆଁ ତରୀ, ପାନ୍ଥ
ଆସୁଥିଲା ବାରବର୍ଷ,
ଫେରିଲେ ମେଲାଣି ପ୍ରିୟା ପାଶୁଁ ଯେବେ
ଶିବରେ ବାର କେଶରୀ ।



## ଅଷ୍ଟମ ସର୍ଗ

ପ୍ରଭାତିଲା ନିଶା ଫିଟିଲା ସହସା
ପ୍ରାଚୀପ୍ରାନ୍ତେ ପ୍ରଭାଦ୍ୱାର,
ଉଷା ଉଦ୍‌ବୋଧନ ସଙ୍ଗୀତ ନିଃସ୍ୱନ
ଶୁଭିଲା ଭରତଆର,
ରଞ୍ଜିଦେଇ ଉଷା ପାଟଳ ରାଗରେ
ଭାନୁ ବିଜୟ ପଥକୁ
ଧୀରେ ଧୀରେ ଦେଲେ ଘଉଡ଼ ଧରାରୁ
ପ୍ରଭାମୟୀ ତିମିରକୁ,

ଦେଖୁଁ ଦେଖୁଁ ଚଢ଼ି ହିରଣ୍ମୟ ଯାନେ
ପ୍ରଭାମୟ ପ୍ରଭାକର
ଚରୁଣ ଅରୁଣ- କରେ ରଙ୍ଗାଣିଲେ
ଧରଣୀର କଳେବର
ସେ ନବ ଉଦ୍‌ଗତ— ବାଳାର୍କ କିରଣ
ଶୁଭ୍ର ସ୍କନ୍ଧାବାରେ ଝଳି
ଦିଶେ ହିମ ଶୃଙ୍ଗ ଶୃଙ୍ଗରୁ ଗୈରିକ
ପ୍ରପାତ ଝରିଲା ଭଳି !
ସୁମନ ବାଉବେ ପ୍ରକୃତି ଆରବେ
ପୂର୍ବ ଦିଶେ ବସୁନ୍ଧରା,
ତାମସୀ ରାକ୍ଷସୀ କବଳରୁ ଖସି
ହସି ଉଠିଲାର ପରା ।
ଶୋଭାର ଉତ୍ସବ- ହାଟ ବସିଗଲା
କିବା ଜଳେ କିବା ସ୍ଥଳେ
ଉଭୟ ବାହିନୀ ରଣସଜ୍ଜା କଲେ
ଯେ ଯାହାର ନିଜଦଳେ ।
ଉଭୟ ଶିବିରେ ବାଜିଲା ଦୁନ୍ଦୁଭି
ଶଙ୍ଖ, ଶିଙ୍ଘା, ଭେରୀ, ତୂରୀ,
ଉଭୟ ବାହିନୀ ଜୟ କୋଳାହଳେ
ଦଶ ଦିଗ ଗଲା ପୂରି ।
ଗତରାତ୍ରୁଁ ପାର୍ଥେ ସମର ପ୍ରାର୍ଥନା
କରି, ନେଇ ଅନୁମତି
ଆଜ ପାଣ୍ଡୁଦଳେ ମିଶିଛୁ ସବଳେ
କାଳକେତୁ ମ୍ଳେଚ୍ଛପତି,

ପାଣ୍ଡବବାହିନୀ ରାଜହଂସଦଳେ
ଅନାର୍ଯ୍ୟ ସୈନକମାନେ,
ବିବିଧ ଆୟୁଧ ଧରି ରଣାଙ୍ଗନେ
ଭ୍ରମନ୍ତ କାଳ ସମାନେ ।
କେଶବ ଆଦେଶେ ଚକ୍ରାକାରେ ବ୍ୟୂହ
ରଚି ପାର୍ଥ ମହାରଥୀ,
ବ୍ୟୂହଦ୍ୱାରେ ବିଜେ କଲେ କପିଧ୍ୱଜେ,
ସଙ୍ଗେ ଶ୍ରୀକୃଷ୍ଣ ସାରଥି ।
ତାହା ଦେଖି ନିଜ ସୈନ୍ୟଙ୍କୁ କୌଶଳେ
ସାଜ ସୁଧନ୍ୱା ତଡ଼ିତ
ଚଢ଼ି ଦିବ୍ୟ ରଥ ହୋଇଲେ ଧାବିତ
ପାଣ୍ଡବବାହିନୀ ପ୍ରତି ।
ଉଭୟ ପକ୍ଷରୁ ଉଭୟ ସୈନକେ
ଗର୍ଜନ କରି ଖିପଣେ,
ଧରି ଅସ୍ତ୍ର ଶସ୍ତ୍ର, ଧାଇଁଲେ ପ୍ରଚଣ୍ଡେ
ପରସ୍ପର ଆକ୍ରମଣେ ।
ପାଣ୍ଡବ ସେନାରୁ ଶତ ଶତ ବୀର
ବଧିଲେ ଯୁବରାଜନ,
କୁମାର ପକ୍ଷରୁ ବହୁବୀରେ ପାର୍ଥ
ପେଷିଲେ ଯମ ସଦନ ।
ଏ ସମୟେ ମିଳି ସମରେ ସୁରଥ
ପ୍ରଦ୍ୟୁମ୍ନଙ୍କୁ ତୀକ୍ଷ୍ଣ ଶରେ
କରି ଲଣ୍ଡ ଭଣ୍ଡ ରଥ, ସୂତ, ଅଶ୍ୱ
ବିନାଶିଲେ କଟାକ୍ଷରେ ।

ନରସ୍ୱ ବିରଥ ପ୍ରଦ୍ୟୁମ୍ନେ ଲଭିଚ
ଧରି କହନ୍ତି ସୁରଥ—
"ତାକ ତବ ପିତା ଶ୍ରୀକୃଷ୍ଣଙ୍କୁ ଏବେ
ଦେଖନ୍ତୁ ପୁତ୍ର ବୀରତ୍ୱ;
ଶଙ୍କର ବିଜୟୀ ହୋଇଥିଲ ସିନା
କୁସୁମ କୋଦଣ୍ଡ ବଳେ,
ସମର ବିଜୟୀ ହେବ କେଉଁ ବଳେ
ଆଜ ଏ ସଂଗ୍ରାମ ସ୍ଥଳେ ?
ନାଗ୍ନ ନାଗ୍ନରଙ୍କ ନରଙ୍କୁ ଉଗ୍ରଅ
ଯେଉଁ ପ୍ରତିଭା ଦେଖାଇ,
ଏଥି ନ ଚଳିବ ସେ ପ୍ରତିଭା ତବ
ଶୁଣ ପ୍ରଦ୍ୟୁମ୍ନଭାଇ !
ଅସ୍ତ୍ର ହୀନ ଯେଣୁ ତୁମ୍ଭଙ୍କୁ ବିନାଶ
ନ କରିବି କଦାଚିତ,
ନୁହେ ଇଚ୍ଛା ମୋର କରିବା ପାଇଁ
ପ୍ରଦ୍ୟୁମ୍ନେ ଅପମାନିତ ।
ସ୍ୱୟଂ ଭଗବାନ କୃଷ୍ଣଚନ୍ଦ୍ରଙ୍କର
ପୁତ୍ର ତୁମ୍ଭେ ଅଟ ଯେଣୁ,
ବୈଷ୍ଣବ-କୁଳର ସମ୍ମାନ ଭଜନ,
ଯାଅ, ଛାଡ଼ିଦେଲି ତେଣୁ ।"
ଏଣେ ଅଭିଜିତ କାଳକେତୁ ଶରେ
କାତର ହେବାର ଦେଖି
ଦୈତ୍ୟଙ୍କୁ ସୁରଥ ବିନ୍ଧନ୍ତି ବହୁତ
ଶର ପ୍ରଦ୍ୟୁମ୍ନେ ଉପେକ୍ଷି;

ପରମ ଭକତ ସୁଧନ୍ୱା ସୁରଥ
ଗୁଣରେ ହୋଇ ବିମୁଗ୍ଧ,
ଅବନତ ଶିରେ ରୁକ୍ମଣୀ ନନ୍ଦନ
ବିସ୍ମରନ୍ତ ହୋଇ କ୍ଷୁବ୍ଧ—
"ନ୍ୟାଯ୍ୟ ଯୁଦ୍ଧେ କେବେ ପରାସ୍ତ ନ ହେବେ
ଏହି ବେନି ସହୋଦର;
ମାତ୍ର ପାଣ୍ଡବଙ୍କ ଜୟ ଅନିବାର୍ଯ୍ୟ
ଅଛନ୍ତି ଯେଣୁ ପିଅର ।
ଯାବତ ଧାରଣ୍ଣ, ନ୍ୟାଯ୍ୟ, ଧର୍ମ, ସତ୍ୟ
ହୋଇଅଛି ଏଥି ମୂଳ;
ମାତ୍ର ତାହା ସବୁ ଏହି ସମରରେ
ଅଚିରେ ହେବ ନିର୍ମ୍ମୂଳ ।
ଧ୍ୱଂସ ହେବ ନିଶ୍ଚେ ସୁଧନ୍ୱା ସୁରଥ
ସେ ଖ୍ରମ ଦୃଶ୍ୟ ଲୋକନ
ନ ପାରିବ କରି," ଏତେ ଭାବି ଗଲେ
ରଣ ତେଜି ପ୍ରଦ୍ୟୁମନ ।
ଏଣେ କାଳକେତୁ କରି ପରାଜିତ
ଅଭିଜିତ ସୁରଥଙ୍କୁ
ଅମିତ ବିକ୍ରମେ ଧ୍ୱଂସ କରେ ଭଦ୍ରା-
ବତୀ ସୈନମାନଙ୍କୁ ।
ଖ୍ରୀଷଣ ସଂହାର ମୂରତି ତାହାର
ଦେଖି ଦୂରୁ ସୈନ୍ୟଗଣ,
ରଣ ଭଙ୍ଗ ଦେଇ କରନ୍ତି ସରବେ
ପ୍ରାଣ ଭୟେ ପଳାୟନ ।

ଦେଖି ତା ଅଦୂରୁ ପ୍ରେମକୁ ସୁଧନ୍ୱା
କହନ୍ତି "ହେ ବୀରବର !
ଦେଖ କାଳକେତୁ ସୈନ୍ୟବଳ ସବୁ
ବିନାଶ କରେ ଆମ୍ଭର ।
କାହିଁ ପାଇଁ ଆଜ ମୋର ପାଶେ ତୁମ୍ଭେ
ରହିଅଛ ଅନୁକ୍ଷଣ ?
ଯାଅ ଯାଅ ଭାଇ ରକ୍ଷାକର ଯାଇ
ଭଦ୍ରାବତୀ ସୈନ୍ୟଗଣ ।"
କର ଯୋଡ଼ି ପ୍ରେମ କହେ, ଗୁରୁଦେବ !
ତବ ପାଶ ଛାଡ଼ିକରି
ଅନ୍ୟତ୍ର ଗମନ କରିବାକୁ ମନ
ଲବେ ନ ବଳେ ମୋହରି ।
ଶକ୍ତି ଅପହୃତ ହେଲେ ହେଁ ତୁମ୍ଭର
ଅଛି ମୁହିଁ ବର୍ତ୍ତମାନ,
ଦେଖାଯାଉ ଆଜ କପରି ଶ୍ରୀକୃଷ୍ଣ
ବିନାଶିବେ ତବ ପ୍ରାଣ ।"
ବୋଇଲେ ସୁଧନ୍ୱା "ଭୟ କସ ? ଭାଇ !
ସହସା ମୋତେ ନିଧନ
କରି ନ ପାରିବେ ରଣେ କଲେ ସୁଦ୍ଧା
ଶକତି ଅପହରଣ ।
ମୋ ପାଶେ ଯାବତ ଅଛି ଗୁରୁଦତ୍ତ
ବୈଷ୍ଣବାସ୍ତ୍ର ପ୍ରେମମୟ,
ତାବତ ବିନାଶ ଅସମ୍ଭବ ମୋର
ବୃଥା କପାଁ କର ଭୟ ?

ଯାଅ ଯାଅ ସୈନ୍ୟେ ଦେଖିଲେ ତୁମ୍ଭଙ୍କୁ
ଦ୍ୱିଗୁଣ ଉତ୍ସାହେ ରଣ
କରି ଏ ଦୁରାତ୍ମା କାଳକେତୁ ଗର୍ବ
କରିବେ ନଷ୍ଟେଁ ଗଞ୍ଜନ ।"
କହେ ପ୍ରେମମୟ "ଯେବେ ଅଭିପ୍ରାୟ
ଯିବାକୁ ମୁହିଁ ସେ ସ୍ଥାନେ,
ମୁହଁ ତାଙ୍କ ପାଇଁ ଯାଉଛି, ମାତର
ଥିବଟି ତୁମ୍ଭେ ସାବଧାନେ ।
ଏକା କୃଷ୍ଣ ବିନୁ ତୁମ୍ଭର ଅନିଷ୍ଟ
କରି ନ ପାରିବେ କେହି,
ତାଙ୍କ ପ୍ରତି ସଦା ଲକ୍ଷ୍ୟ ରଖିଥିବ
ପରମ କୁଚକ୍ରୀ ସେହି ।"
ଚକ୍ରଧର ଚକ୍ରେ ସୁଧନ୍ୱା ପାଶରୁ
ଦୁଅନ୍ତେ ପ୍ରେମ ଅନ୍ତର,
ଦେବଦତ୍ତ ସ୍ୱନ କରି ଅରଜୁନ
ଆସି ମିଳିଲେ ସତ୍ୱର ।
ନର ନାରାୟଣ କରି ସନ୍ଦର୍ଶନ
କପିକେତନ ସ୍ୟନ୍ଦନେ,
ଅନୁଗାମୀ ଭଦ୍ରା- ବକ୍ଷର ସୌଭାଗ୍ୟ
ଭାବି ପୁଲକିତ ମନେ,
ଧନୁ ଶର ଥୋଇ ପ୍ରଣିପାତ କରି
ବନ୍ଦନ୍ତେ ଯୁବରାଜନ,
ଅର୍ଜୁନେ ପୁଚ୍ଛନ୍ତି ଲଳିତ ଗମ୍ଭୀର-
ସ୍ମିତ ବଚନେ ଏସନ—

"କହ ଧନଞ୍ଜୟ ! କେଉଁ ବନୁ ଆର୍ଯ୍ୟ
ପାଣ୍ଡବେ ଅନାର୍ଯ୍ୟଙ୍କର
ସାହାଯ୍ୟ ଭିଖାରି ହୋଇ ରହିଲେଣି
ଆତ୍ମରକ୍ଷାର୍ଥେ ଏଥର ?
ବୋଇଲେ ଅର୍ଜୁନ, "ଆଜ କାଳକେତୁ
ଉଦ୍ଭାବଣ୍ଡ ଭାଗ୍ୟାକାଶେ
ଧୂମକେତୁ ରୂପେ ହୋଇଛୁ ଉଦିତ
ତୁମ୍ଭଙ୍କୁ ନାଶିବା ଆଶେ ।
ସ୍ୱ ଇଚ୍ଛାରେ ଆସି ମିଶିଅଛୁ ହୋଇ
ତୁମ୍ଭ ବପକ୍ଷେ ଯୁଦ୍ଧାର୍ଥୀ;
ନୁହନ୍ତି ପାଣ୍ଡବେ, ବଳବୀର୍ଯ୍ୟ ହୀନ
ହେବାକୁ ତା ଶରଣାର୍ଥୀ ।"
"କିନ୍ତୁ ତାର ଆଜ ମୃତ୍ୟୁ ଅନିବାର୍ଯ୍ୟ"
ବୋଲି କହନ୍ତେ କୁମାର,
ବୋଇଲେ ଅର୍ଜୁନ, "ନାହିଁ ତବ ଶକ୍ତି
ଛୁଇଁବାକୁ କେଶ ତାର ।
ଅନାର୍ଯ୍ୟ ହେଲେହେଁ ଅତିଥି ସ୍ୱରୂପେ
ରହିଅଛି ମୋର ପାଶେ;
ହେଲେ ପ୍ରୟୋଜନ ପ୍ରାଣ ଦେଇ ତାକୁ
ରଖିବ ମୁଁ ଅନାୟାସେ ।
ବୋଇଲେ କୁମାର "ପ୍ରତିଜ୍ଞା ମୋହର
ଶୁଣ ବୀର ଧନଞ୍ଜୟ !
ଆଜ ବନାର୍ଦ୍ଧର ମଧ୍ୟେ ଯବ ଦୈତ୍ୟ
କରି ନ ପାରେ ବଳୟ,

ପରାଜୟ ମାନ କରିବ ତୁମ୍ଭଙ୍କୁ
ନଶ୍ବେଁ ଆତ୍ମସମର୍ପଣ,
ଯେବେ ଅଛୁ ଶକ୍ତି ରୋଧ ମୋର ଗତି
ସାକ୍ଷୀ ଥାଅ ନାରାୟଣ ।"
ଏତେ ବୋଲି ବୀର ଟଙ୍କାର କାର୍ମ୍ମୁକ
କାଣେ ଆଚ୍ଛାଦ ଗଗନ,
ବ୍ୟୂହଦ୍ୱାର ଭେଦ କରନ୍ତି ବିଜୟ—
କମ୍ବୁ ଘୋଷ ଘନ ଘନ ।
ସେହି ପ୍ରଜ୍ୱଳିତ ପାବକପ୍ରତିମ
ରୂପ ଦେଖି ମହାଭୟେ
ଡାକେ କାଳକେତୁ, "ଆହେ ଧନଞ୍ଜୟ !
ରକ୍ଷା କର ଏ ସମୟେ ।"
ଘୋର ସିଂହନାଦ କରନ୍ତି କୁମାର
ଦୈତ୍ୟେ ବାଣ ବରଷଣ,
ଅମିତ ବିକ୍ରମେ ଧନଞ୍ଜୟ ତାହା
ଛେଦ ପକାନ୍ତି ତତ୍‌କ୍ଷଣ ।
ବାଣ ବ୍ୟର୍ଥ ଦେଖି କୋପେ ଯୁବରାଜ
ଧରି ଗୁରୁଦତ୍ତ ଶର,
ବୋଇଲେ, ହେ ପାର୍ଥ ! କରନ୍ତୁ ରକ୍ଷଣ
କାଳକେତୁଙ୍କୁ ଏଥର ।
ଆରେ କାଳକେତୁ ! ତୋହ ଲାଗି ରକ୍ଷା
ପାଇଗଲେ ଧନଞ୍ଜୟ,
ନଚେତ୍ ବା ଧରଣୀ ହୋଇଥାନ୍ତା ଆଜ
ଅର୍ଜ୍ଜୁନଶୂନ୍ୟ ନିଶ୍ଚୟ ।"

ଏଥୁ ଅନ୍ତେ ବୀର  ସେହି ମହାଶର
କଲେ କାର୍ମୁକେ ଯୋଜିତ,
ହସ୍ତରହସ୍ୱର  ସେ ଶର ଦର୍ଶନେ
ହେଲେ ଧନଞ୍ଜୟ ଖ୍ୟାତ ।
କୁମାରନିକ୍ଷିପ୍ତ  ସେ ଶରେ ନଷ୍ଟ ଭ
ହେଲେ ଗଗନେ ମିହିର,
ଗିରିବର ଚୂଡ଼ା  ପରାଏ ଭୂତଳେ
ପଡ଼ିଲା ଦାନବ ଶିର ।
ସ୍ୱଭାବେ ଦନୁଜ  ଗନ୍ଧର୍ବ ତନୁଜ
ହୋଇଥିଲା ଶାପଯୁକ୍ତ
ଗନ୍ଧର୍ବଲୋକକୁ  ଗଲା ଦିବ୍ୟରଥେ
ହୋଇ ଏବେ ଶାପୁ ମୁକ୍ତ ।
କାଳକେତୁ ବଧେ  ହୋଇ କୋପଭର
ବିନ୍ଧି ପାର୍ଥ ବହୁ ଶର,
ହଣି ଧନୁ ଦେଲେ  ପଛକୁ ଘୁଞ୍ଚାଇ
କୁମାରଙ୍କ ରଥବର ।
କଟାକ୍ଷେ ସାରଥି  ପୁଣି ରଥ ଆଣି
କଲା ପାର୍ଥଙ୍କ ଅଗ୍ରତେ
ହଟାଇଲେ ପଞ୍ଚ-  ଧନୁ ଶରେ ଶର
ଯୁବରାଜ ପାର୍ଥ ରଥେ !
ହସି ଅରଜୁନ  ବୋଇଲେ କୃଷ୍ଣଙ୍କୁ
"କହ ସଖେ ! କରି ସତ
ପରସ୍ପର ରଥ  ହଟିବାରେ ହେଲା
କାହାର ବେଶୀ ବୀରତ୍ୱ ?"

ବୋଇଲେ ଶ୍ରୀକୃଷ୍ଣ, "ତବ ରଥେ ସଖେ !
ଧ୍ୱଜ ବୀର ହନୁମାନ
ସ୍ୱୟଂ ବଶ୍ୱମ୍ଭର ମୁହିଁ ଅଛୁ ଦେବ
ଏହାକୁ କାହୁଁ ସମାନ ?
ସୁଧନ୍ୱାର ଏହି ତୁଚ୍ଛ ରଥବର,
ତେଣୁ ସୁଧନ୍ୱା ବୀରତ୍ତ୍ୱ
ତବଠାରୁ ବେଶୀ," ଶୁଣି ପାର୍ଥ କଲେ
ଲଜ୍ଜାରେ ବଦନ ନତ ।
ବୋଇଲେ ସୁଧନ୍ୱା, "ଦୟାମୟ ହରି !
ଘେନ ଦାସ ନବେଦନ,
ଯଦି ଆଜ ରଣେ ନ କରିବେ ତିଳେ
ପକ୍ଷପାତ ଆଚରଣ,
ତେବେ ପାର୍ଥ ତୁଲେ ଯାବନ୍ତୀୟ ବୀର
ଅଛନ୍ତି ଏ ଭାରତରେ,
ମିଳଲେହେଁ ମୋତେ ପରାଜିତ କରି
ପାରିବେ ନାହିଁ ସମରେ ।
ବୃଥା ଅହଙ୍କାର ନୁହେଁ ଏହା ମୋର
ତବ ଦତ୍ତ ଶକ୍ତିବଳେ,
ତବ ଶରଭୃତ୍ୟ ହୋଇ ଗଲେ ସ୍ଥିତ
ନବେଦିଲି ପଦତଳେ ।
ନିରପେକ୍ଷଭାବେ ବସି କପିଧ୍ୱଜେ
କରନ୍ତୁ ଅବଲୋକନ,
ପରସ୍ପର ପରା- କ୍ରମ ଶ୍ରୀମୁଖରେ
ଦେଖାଇବୁ ବେନି ଜନ ।"

ଶୁଣି ଯଦୁନାଥ ହେଲେ ସନମତ
ଏଥୁଅନ୍ତେ ବେନ ବୀର
ପରସ୍ପରେ ବାଣ କରସନ୍ତି, ବହେ
ବେନଙ୍କ ଅଙ୍ଗୁ ରୁଧିର ।
ବେନ ମହାବୀର ବାଛୁ ବାଛୁ ଶର
ବିନ୍ଧି ଭୁହାଇ ଭୁହାଇ,
ପରସ୍ପର ରକ୍ତ- ବର ପରସ୍ପରେ
ଦେଲେ ବାଣେ ବାଣେ ଗୁଇ ।
ବିନ୍ଧିଲେ ଅର୍ଜ୍ଜୁନ ଅର୍ଦ୍ଧଚନ୍ଦ୍ର ବାଣ
ଯୁବରାଜ କଳେବରେ,
ବିଷମ କ୍ଳେଶରେ ଉତ୍ପୀଡ଼ିତ ହେଲେ
କୁମାର ସେ ମହାଶରେ ।
ଶୁଷ୍କ ତୃଣାବଳୀ ଯେସନ୍ତେ ଉଠେ ଜଳି
ଅନଳ ସଂଯୋଗ ପାଇଁ
ତେସନ କୁମାର ମହା କୋପଭର
ପାର୍ଥ ଶରଘାତ ଖାଇ ।
ରୁଦ୍ର ପରାକ୍ରମେ ଶରବୃଷ୍ଟି ବୀର
କରନ୍ତି ଅର୍ଜ୍ଜୁନ ପରେ,
ମାତ୍ର ତାହା ଛେଦି ପକାନ୍ତି ଅର୍ଜ୍ଜୁନ
ଅର୍ଦ୍ଧପଥୁଁ ପ୍ରତିଶରେ ।
କୋପେ ବ୍ରହ୍ମଶର ବିନ୍ଧିଲେ କୁମାର
ଅର୍ଜ୍ଜୁନଙ୍କୁ ପ୍ରଚଣ୍ଡରେ,
ଖିଷଣ ଅନଳ ଉଗାରି ସେ ଶର
ଆସେ ଆକାଶପଥରେ;

ବାଣ ଦେଖି ପାର୍ଥ ହୋଇ ମହାଭୀତ
ବନ୍ଧନ୍ତି ଶର ବହୁତ,
ମାତ୍ର ବାଣମୁଖେ ପଡ଼ି ସେ ଶାୟକେ
ହୋଇଯାନ୍ତି ଭସ୍ମୀଭୂତ;
ଅବ୍ୟର୍ଥ ବ୍ରହ୍ମାସ୍ତ୍ର ଜାଣି ଯଦୁନାଥ
ଅର୍ଜୁନେ ଆଚ୍ଛାଦ୍ଧ ଧରି
ବାହୁ ବେଷ୍ଟନରେ, ବିଷ୍ଣୁ ତେଜେ ଦେଲେ
ବ୍ରହ୍ମଶରେ ବ୍ୟର୍ଥ କରି ।
ଦେଖି ସହାସ୍ୟରେ ସୁଧନ୍ୱା କୋଇଲେ,
"କପଟ ଆହେ ଅଚ୍ୟୁତ !
କଲ ପକ୍ଷପାତ ନ କରିବ ବୋଲି
ଥିଲ ପରା ପ୍ରତିଶ୍ରୁତ ?"
ଦେବ ନାରାୟଣ ପାଣ୍ଡବଙ୍କ ମାନ
ରକ୍ଷଣେ କରନ୍ତି ଯେଣୁ,
କୁମାରଙ୍କ ବାଣୀ ଶୁଣିଲେହେଁ ହେଲେ
ନ ଶୁଣିଲା ପରି ତେଣୁ ।
ଅର୍ଜୁନଙ୍କୁ ବୁଝି କହନ୍ତି, "ହେ ସଖେ !
ଆଉ ସୁଧନ୍ୱାର ହସ୍ତେ
ନାହିଁଟି ନସ୍ତାର, ବିନାଶ ତାହାକୁ
ଶୀଘ୍ର ପାଶୁପତ ଅସ୍ତ୍ରେ ।"
କୃଷ୍ଣଙ୍କ ଆଦେଶେ ବୀର ସବ୍ୟସାଚୀ
ଧରି ପାଶୁପତ ଶର
କୋଇଲେ, "ସୁଧନ୍ୱା ! କାଳ ପୂର୍ଣ୍ଣ ନଷ୍ଟେ
ହେଲା ଏଥର ତୁମ୍ଭର !"

ବୋଇଲେ କୁମାର, "ଜାଣୁଅଛୁ ବୀର !
ପୂର୍ଣ୍ଣ ମୋହର ନିୟତି,
ନଭୁବା କ ହରି ଏତେ ନିଦାରୁଣ
ହୁଅନ୍ତେ ଏ ଦାସ ପ୍ରତି ?
ମାର ଧନଞ୍ଜୟ ! କି କାର୍ଯ୍ୟ ଏ ପ୍ରାଣେ
ଆଉ ଏ ସଂସାରେ ଥାଇ ?
ବୃଥା ସେ ଜୀବନ ଯେ ଜୀବ ଉପରେ
ହରିଙ୍କର ଦୟା ନାହିଁ ।"
ଏହା କହି ବୀର ଦେଜ ଧନୁଶର
ରଥବରୁ ଅବତରି,
ଯାଇ ଭୂତଳରେ ଉଭାହେଲେ ଖରେ
କର ପ୍ରସାରଣ କରି ।
ଏଣେ ପ୍ରେମମୟ ରଥ ଅଲକ୍ଷିତେ
ରଥବର ଅନ୍ତରାଳେ,
କୃଷ୍ଣାର୍ଜୁନଙ୍କର ଅନ୍ୟାୟ ସମର
ନିରେଖୁଥିଲେ ଏକାଳେ ।
ଦେଖିଲି ଋଷିଗଣେ ଗରଜି ଗଗନେ
ଆସେ ପାଶୁପତ ଶର,
ଆସି ଋମବେଗେ କୁମାରଙ୍କ ବକ୍ଷେ
ଧାରଣ କଲି ସତ୍ୱର ।
ପାଶୁପତ ଅସ୍ତ୍ର ଭେଦିଲା ସହସା
ପୃଷ୍ଠଦେଶରେ ତାହାର,
ତଳପଡ଼ୁଁ ତାକୁ ବେନଭୁଜେ ଦୃଢ଼େ
ଭିଡ଼ି ଧଇଲେ କୁମାର ।

ଅବସନ୍ନ ପ୍ରାଣେ ସଜଳ ନୟନେ
ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟ କରି
କ୍ଷୀଣକଣ୍ଠେ କହେ ପ୍ରେମମୟୀ, "ଆହେ
କପଟୀ ନିଷ୍ଠୁର ହରି !
ଏହି ପକ୍ଷପାତ ଯଦି ଜଗନ୍ନାଥ !
ହେଲା ତବ ଆଚରଣ,
କହ ଲୀଳାମୟ ! ଲୀଳାରୁ ତୁମ୍ଭର
କି ଶିକ୍ଷା ଲଭିବେ ଜନ ?
ଆଉ କେତେ ପ୍ରାଣ ଅର୍ଜୁନ ରକ୍ଷଣେ
ହରିବ ହେ ଭଗବାନ ?
ପାଣ୍ଡବଙ୍କ ମାନ ରକ୍ଷାର୍ଥେ ହେଲେଣି
ଶତ ଭକ୍ତ ବଳିଦାନ !
ଭକତେ ଏପରି ନାଶିଲେ କେ ଶାନ୍ତି
ଦେବ ପଗଣେ ତା'ଙ୍କର ?
ଆସିଅଛି ମନ୍ତ୍ରୀ- ଙ୍କର ନିବାରଣେ,
ଯାହା ଇଚ୍ଛା ତାହା କର ।
ହେ ଦେବ ! କୁମାର ଗୃହ୍ନ ଏକବାର
ଏ ଚରଣ ଦାସୀ ପ୍ରତି,
ନୁହେଁ ମୁଁ ବାଳକ, ଅଟେ ସିନ୍ଧୁରାଜ-
ସହୋଦର ଇନ୍ଦୁମତୀ ।
କାୟମନୋବାକ୍ୟେ ତବ ପଦେ କରି
ଆତ୍ମପ୍ରାଣ ସମର୍ପଣ,
ଥିଲି ଛଦ୍ମବେଶେ ଶିଷ୍ୟରୂପେ ପାଶେ
କରି ସେ ଦୋଷ ମାର୍ଜନ,

ଅନ୍ତିମେ ଦାସୀର ଅନ୍ତିମ ପ୍ରଣାମ
କରନ୍ତୁ ଦେବ ! ଗ୍ରହଣ,
ଅନ୍ତିମ ବିଦାୟ ଦିଅନ୍ତୁ ଦାସୀରେ
ବୀରେନ୍ଦ୍ରମୌଳିମଣ୍ଡନ !
ଇନ୍ଦୁମତୀ ବାଣୀ ଯୁବରାଜ ଶୁଣି
ମଣିଗଲେ ଚମତ୍କାର,
ସକରୁଣ ଭାଷେ ଭାଷନ୍ତି ନୟନୁ
ବୁହାଇ ଲୋତକଧାର—
"ସତ କି ଏ କଥା ? କି ଅବା ସ୍ୱପନ ?
ଭାବି ପାରୁ ନାହିଁ ଚିତ୍ତେ,
ହତଭାଗ୍ୟ ମୁହିଁ ତୁମ୍ଭଙ୍କୁ ଯା ଚିହ୍ନି
ନ ପାରିଲି ଶୁଚିସ୍ମିତେ !
ଯେବେ ଜାଣିଥାନ୍ତି ହୃଦୟେ ସ୍ଥାପି ଏ
ଜୀବନ ପ୍ରୀତିପ୍ରତିମା
ପ୍ରେମ ପ୍ରସ୍ରବଣେ ପ୍ଲାବି ଭରିଥାନ୍ତି
ପ୍ରାଣେ ଦିବ୍ୟ ମଧୁରିମା ।
ଏ ପ୍ରାଣ ରକ୍ଷଣେ କପାଁ ଅକାରଣେ
ଧ୍ୱଂସ କଲ ପ୍ରିୟେ ! ଆଜ
ଏ ସ୍ୱର୍ଣ୍ଣବଲ୍ଲରୀ ଛନୁ ଗୋ ତୁମ୍ଭର,
ମୋର ମୃତ୍ୟୁ ଅନିବାର୍ଯ୍ୟ ।"
ବୋଲେ ଇନ୍ଦୁମତୀ, "କଲି ମୁଁ କର୍ତ୍ତବ୍ୟ
ପାଳନ ପରମେଶ୍ୱର !
ତୁମ୍ଭେ ମୋର ପତି, ରମଣୀର ତବ
ପ୍ରାଣ ସର୍ବଥା ମୋହର ।"

ସତ୍କାର ଭୁଲେ      ମାଧବୀ ପରିଏ
ଜଡ଼ ହୋଇ ବେନି ଜନ
ପରସ୍ପର ମୁଖ      ବିଲୋକ କରନ୍ତି
ପ୍ରେମ ଅଶ୍ରୁ ବିସର୍ଜନ ।
ସେ କରୁଣ ଦୃଶ୍ୟ      ଦେଖି ଧନଞ୍ଜୟ
ମୁଞ୍ଚନ୍ତି ନୀରବେ ନୀର,
ନିର୍ବାତ କାନନ      ପରି ସୈନ୍ୟଗଣ
ରହିଛନ୍ତି ହୋଇ ସ୍ଥିର ।
"କିସ ଦେଖ ସଖା,"      ବୋଲି ଯଦୁପତି
କହନ୍ତି ଅର୍ଜୁନେ ଚାହିଁ,
"ଏହି ଅବସରେ      ମାର ସୁଧନ୍ୱାରେ
ନତୁବା ନିସ୍ତାର ନାହିଁ ।"
ବୋଲନ୍ତି କିରୀଟୀ,      "କେଉଁପରି ସଖେ !
ନିରସ୍ତ୍ର ବିପନ୍ନ ପ୍ରତି
ନିକ୍ଷେପିବି ଅସ୍ତ୍ର      ନିର୍ଦ୍ଦୟ ଭାବରେ ?"
ଶୁଣି ଶ୍ରୀକୃଷ୍ଣ କହନ୍ତି,—
"ଦୟା ମାୟା ନ୍ୟାୟ—      ଅନ୍ୟାୟାଦି ସବୁ
କରି ମୋଠାରେ ଅର୍ପଣ,
ବିଶୁଦ୍ଧ ଚିତ୍ତରେ      ମୋର ଆଦେଶରେ
କର କର୍ତ୍ତବ୍ୟ ପାଳନ ।"
ଶୁଣି ଧନଞ୍ଜୟ      ଅଗ୍ନି ପ୍ରଭାମୟ
ସୁତୀକ୍ଷ୍ଣ ନାରାଚ କରେ
ଧରି ପ୍ରଚଣ୍ଡରେ      ବିନ୍ଧନ୍ତେ କୁମାରେ
ଭେଦିଲା ସେ ଶର ଖରେ ।

"ଓହୋ କି ନର୍ଦ୍ଦୟ ତୁମ୍ଭେ ଧନଞ୍ଜୟ !
ଧିକ ତୁମ୍ଭ ବୀରପଣ !"
କନ୍ତ୍ର ବକ୍ଷେ ଧରି ଇନ୍ଦୁବଦନୀକି
ହେଲେ କୁମାର ପତନ ।
ରୁଧିରେ ପ୍ଲାବିତ ହୋଇ ବୃନ୍ତଚ୍ୟୁତ
ପଳାଶ କୁସୁମ ପରି
ପାର୍ଥ ଶର ବଦ୍ଧ ପ୍ରେମିକ ପ୍ରେମିକା
ଲୋଟିଗଲେ ବସୁନ୍ଧରୀ ।
ଜାହ୍ନବୀ କୃପାରୁ ଇଚ୍ଛାମୃତ୍ୟୁ ବର
ପାଇଅଛୁ ଇନ୍ଦୁମତୀ,
ମାତ୍ର ଶତ ମୃତ୍ୟୁ- ଯନ୍ତ୍ରଣା ଭୋଗଇ
ପାଶୁପତାସ୍ତ୍ରେ ସମ୍ପ୍ରତି ।
ତନ୍ତୁ ବଳି ବ୍ୟଥା ଲଭନ୍ତେ ସର୍ବଥା
ଯୁବରାଜଙ୍କ କଷଣେ,
କହେ ଇନ୍ଦୁମତୀ ସ୍ଥାପି ସ୍ୱୀୟ ଶିର
ପ୍ରାଣବଲ୍ଲଭ ଚରଣେ,—
"ଆହେ ଭଗବାନ ଶରଣରକ୍ଷଣ
ପତିତ ଜନତାରଣ !
ଦୀନଜନବନ୍ଧୁ ଦେବ କୃପାସିନ୍ଧୁ
ଅନ୍ତର୍ଯ୍ୟାମୀ ନାରାୟଣ !
ନାରୀ ହୋଇ ତବ ନୈତିକ ନିୟମ
କରିଅଛୁ ଉଲ୍ଲଙ୍ଘନ,
ରମଣୀସୁଲଭ କୋମଳତା, ମାୟା,
ମମତା କରି ବର୍ଜ୍ଜନ,

ନର୍ଦ୍ଦୟେ ଦଦାର- ଅଛୁ ଅସ୍ତ୍ରେ ଶସ୍ତ୍ରେ
ବନ୍ଧୁ ପୁତ୍ରଙ୍କ ବକ୍ଷ,
ଅଜ୍ଞାନା, ଏ ଦାସୀ ସର୍ବ ଅପରାଧ
କ୍ଷମ ହେ ପୁଣ୍ଡରୀକାକ୍ଷ !
ଜୟ କୃଷ୍ଣଚନ୍ଦ୍ର ! ଜୟ ଗୋକୁଳେନ୍ଦ୍ର !
ଜୟ ଜୟ ନାରାୟଣ !"
କହି ଇନ୍ଦୁମୁଖୀ ଅନ୍ତମନଦ୍ୱାରେ
କଲା ନେତ୍ର ନମୀଳନ ।
ସାନ୍ଧ୍ୟ ତାରାମୁଖ ଢଳେକ ବଳେକ
ସନ୍ଧ୍ୟା ଗଳପର ଲୁଚି,
କାନ୍ତେ ଲୁହିଁ ଲୁହିଁ ଚଳିଲ ଗୋଲେକେ
ନଶ୍ୱର ଶରୀର ମୁଞ୍ଚି ।
କୁମାରଙ୍କ ଲଗି ପ୍ରାଣ ଦେବାପାଇଁ
କରିଥିଲ ଯେଉଁ ପଣ,
ସେହି ପ୍ରତିଜ୍ଞାକୁ କାର୍ଯ୍ୟେ ପୂର୍ଣ୍ଣ କରି
କଲା ବ୍ରତ ଉଦ୍‌ଯାପନ ।
ଏଣେ ଅଭିଜତ, ସୁରଥ ଏକାଳେ
ସମରଭୂମି ପ୍ରାନ୍ତରେ
କରୁଥିଲେ ଘୋର ସମର, ସାତ୍ୟକି
ବୃଷକେତୁ ସଙ୍ଗତରେ ।
ପ୍ରେମମୟୀ ହତ ସୁଧନ୍ୱା ଆହତ
ଏ ବାରତା ପାଇ ରଣେ
ମଣିହରା ଫଣୀ ପ୍ରାଏ ବୀର ବେନି
ଆସନ୍ତ ସମରଦାଣ୍ଡେ ।

ତୁହି ନିରୀକ୍ଷଣ କରି ନାରାୟଣ
ରୁଦ୍ରରୂପ ସୁରଥରେ
କୋଇଲେ, "ହେ ସଖା ! ସତ୍ୱର ସୁରଥେ
ବ୍ରହ୍ମାସ୍ତ୍ରେ ସଂହାର କର ।
ଭ୍ରାତୃଭକ୍ତ ବୀର ଭ୍ରାତୃବଧ କୋପେ
ଧରିଛି ସଂହାର ମୂର୍ତ୍ତି,
କଲେ ଏ ଧାରଣ ବୈଷ୍ଣବାସ୍ତ୍ର ଆଜ
ନାହିଁ ଆମ୍ଭର ନିଷ୍କୃତ ।"
ଶୁଣି ଅରଜୁନ କରି ସଂଯୋଜନ
ଗାଣ୍ଡୀବରେ ବ୍ରହ୍ମଶର
ନିକ୍ଷେପନ୍ତେ, ତାର ତେଜେ ସାଯ୍ୟନ୍ତନ
ଗଗନ ହେଲା ଭାସ୍ୱର
ଦେଖି ତାହା ଦୂରୁ ସୁରଥ ହସ୍ତରୁ
ଥୋଇ ଧନୁଶର ତଳେ
କରପଦ ଯୋଡ଼ି କହନ୍ତି କୃଷ୍ଣଙ୍କୁ
ଭସାଇ ବକ୍ଷାଶ୍ରୁଜଳେ,—
"ନ୍ୟାୟ ଅବତାର କରୁଣାସାଗର
ତୁମ୍ଭେ ପରା ଦୟାମୟ !
ଅନାର୍ଯ୍ୟ ପରାଏ ପରିପୂର୍ଣ୍ଣ ତବ
ନୀତିରେ ଶଠତାଚୟ ।
ନାରାୟଣ ଖାତିରି ଯେବେ ଏହିମତ
ହେବ ଏ ବିଶ୍ୱଧାମରେ,
କହ କହ ତବ ଲୀଳାରୁ କି ଶିକ୍ଷା
କରିବେ ଏ ବିଶ୍ୱନରେ ?

ଅନନ୍ତ ରୂପଧର ମାୟା ମାୟାଧର !
କାହୁଁ ଜାଣିବ ମୁଁ ଘୁର ?
ଯାହା ଇଚ୍ଛା ତାହା କର ଇଚ୍ଛାମୟ
ହରଣ କର ଭୂଭାର ।”
ଏକାଳେ ହୃଦୟେ ଭେଦନ୍ତେ ସହସା
ଅର୍ଜ୍ଜୁନ ନିକ୍ଷିପ୍ତ ଅସ୍ତ୍ର
ଅସ୍ତାଚଳ ରବି ପରି ରଥପରୁଁ
ପଡ଼ିଲେ ତଳେ ସୁରଥ ।
କୃଷ୍ଣଙ୍କୁ ଅନାଇ 'କୃଷ୍ଣ' 'କୃଷ୍ଣ' କହି
କୃଷ୍ଣରୂପ କରି ଧ୍ୟାନ
ନଶ୍ୱର ଶରୀର ପରିହରି ବୀର
କଲେକ ମହାପ୍ରସ୍ଥାନ ।
କରି ହାହାକାର ଉଭୟ ପକ୍ଷର
ସୈନ୍ୟ ସେନାପତିମାନେ
ଶତ୍ରୁଭାବ ଭୁଲି ବରଷନ୍ତି ଅଶ୍ରୁ
ମିଳି ତାଙ୍କ ସନ୍ନିଧାନେ ।
ସୁଧନ୍ୱା, ସୁରଥ ଇନ୍ଦୁମତୀ ସହ
ପଡ଼ିଛନ୍ତି ମହୀପରେ,
ରୁଧିରଚର୍ଚ୍ଚିତ ଅଙ୍ଗ ସୁରଞ୍ଜିତ
ଭଗ୍ନେ ଅସ୍ତ ରବିକରେ ।
ପାରୁଶେ ତାଙ୍କର ଅଭିଜାତ ବସି
କାନ୍ଦେ ଅତି ଉଚ୍ଚସ୍ୱରେ
ମାତ୍ର ମହାନନ୍ଦା ନ ଭାଙ୍ଗେ ତାଙ୍କର
ସେ କରୁଣ ବିଳାପରେ ।

ଗୋଲକବିହାରୀ ରୂପ ହରିଙ୍କର
କରିବାକୁ ଦରଶନ
ଥରେ ଥରେ ମାତ୍ର ଯୁବରାଜ ନେତ୍ର
କରୁଥାନ୍ତି ଉନ୍ମୀଳନ ।
ଭକତର ମନ ଜାଣି ଭଗବାନ
ଅର୍ଜ୍ଜୁନଙ୍କୁ ସଙ୍ଗେ ଘେନ
ସୁଧନ୍ୱା ପାଶରେ ଯାଇ ଉଭା ହେଲେ
ନର ନାରାୟଣ ବେନ ।
ବାଳକ କୁମାର କ୍ଷୀଣ କଣ୍ଠେ ଧୀରେ
କହନ୍ତି "ହେ ଦୟାମୟ !
ଯୁଗଳ ମୂରତି ନ ଦେଖି ତୁମ୍ଭର
ବ୍ୟାକୁଳ ମୋର ହୃଦୟ ।"
ଅନେ୍ୟ ନୋହି ଦୃଶ୍ୟ ସୁଧନ୍ୱା ଅଗ୍ରତେ
ସହସା ହେଲେ ପ୍ରକାଶ,
ରାଧାକୃଷ୍ଣ ବେନ ମୂରତି ତମାଳେ
ସ୍ୱର୍ଣ୍ଣବଲ୍ଲରୀ ବିକାଶ ।
କିବା ଇନ୍ଦ୍ରନୀଳ- କାନ୍ତ ଶୈଳଶିର
ବକ୍ଷେ ବହେ ନିର୍ଝରିଣୀ,
ଅବା କଳ୍ପତରୁ ଅଙ୍ଗେ ପ୍ରେମଲତା,
କିବା ଘନେ ସୌଦାମିନୀ ।
ସ୍ନିଗ୍ଧ ମନୋଜ୍ଜ୍ୱଳ ସୌନ୍ଦର୍ଯ୍ୟ ନିର୍ମଳ
ମୁଖେ ମନ୍ଦ ମନ୍ଦ ହାସ,
ହେମ ମରକତ ଯୁଗଳ ଅଙ୍ଗରୁ
ପ୍ରସରଇ ଦିବ୍ୟ ବାସ ।

ସେହି ପ୍ରାଣାରାମ ପ୍ରୀତିମୟ ମୂର୍ତ୍ତି
ମୂରତି କରି ଲୋକନ
ପରାଣ ପିପାସା ମେଣ୍ଟାଇ ବିନୟେ
କହନ୍ତି ଯୁବରାଜନ,—
"ଭକତବତ୍ସଳ ଆହେ ଆଦିମୂଳ !
କାମନା-କଳପତରୁ ।
ଆଜ ମୋର ଆଶା ପୂର୍ଣ୍ଣ ହେଲା ତବ
ଅପାର କୃପା ବଳରୁ ।
ଏତିକ ମାଗଇ ନିବେଦନ ଯେଉଁ
ତାତ ଜନନୀଙ୍କ ପାଇଁ
କଲ ଏତେ କୃତ୍ୟ ତାଙ୍କୁ ଏହିରୂପେ
ମୁକ୍ତି ଦିଅ ଭବଗ୍ରାହୀ !
ଏ ଅନ୍ତେ ସୁଧନ୍ୱା 'ହରି' 'ହରି' ବୋଲି
କଲେ ନୟନ ମୁଦ୍ରିତ
ଶ୍ରୀରାଧା ଶ୍ରୀକୃଷ୍ଣ ଯୁଗଳ ମୂରତି
ହୋଇଗଲେ ଅନ୍ତର୍ହିତ ।
ଦେଖିଲେ ଶ୍ରୀକୃଷ୍ଣ ପାର୍ଥ କୁତୂହଳେ
ଯାଆନ୍ତି ଅନନ୍ତ ପଥେ,
ସୁଧନ୍ୱା, ସୁରଥ ଦେହୁଁ ଦିବ୍ୟଜ୍ୟୋତି
ଚଢ଼ି ଜ୍ୟୋତିର୍ମୟ ରଥେ !
ଜୀବ ମୁକ୍ତ ହେଲା କେବଳ ରହିଲା
ଦେହ ପଡ଼ି ଧରାତଳେ,
ଏହି ପରିଣାମ ଅନ୍ତିମେ ଘଟଇ
ସିନା ମାନବ ସକଳେ !

ମାୟା ମୋହମୟ ଏ ସଂସାର, କାଛୁ
ନୁହେ ଭୁଞ୍ଜ ସ୍ୱପ୍ନ ଭଗ
ଇନ୍ଦ୍ରଜାଲପୂର୍ଣ୍ଣ ଘୋର ତମ ଅଛି
ଆଚ୍ଛାଦ ଅନନ୍ତ ଧରା ।
ଏକାଳେ ସମର- ଭୂମି ପ୍ଲାବ ଦେଇ
ପବିତ୍ର ତ୍ରିବେଣୀ ଧାର ।
କଳ କଳ ନାଦେ ବହି ଆସେ କର
ଜନତାକୁ ଚମତ୍କାର ।
ଦିବ୍ୟରୂପେ ସେହି ଜଳୁ ଆବିର୍ଭୂତ
ହେଲେ ମହାଜ୍ୟୋତିଷ୍ମତୀ,
ନାରୀ ଚତୁଷ୍ଟୟ ଜାହ୍ନବୀ, ଯମୁନା
ସରସ୍ୱତୀ, ହୈମବତୀ ।
ଶ୍ରୀଅଙ୍ଗୁ ତାଙ୍କର ସ୍ଫୁରେ ଶ୍ୱେତ, ନୀଳ,
ରକ୍ତ, ପୀତ ପ୍ରଭାଚୟ
ରବି ଅସ୍ତରାଗେ ମିଶି ରଣସ୍ଥଳ
ଦିଶେ ଇନ୍ଦ୍ରଧନୁମୟ ।
ସୁଧନ୍ୱା ସୁରଥ ପ୍ରେମରୁ ଜାହ୍ନବୀ
ଧରି ସ୍ୱବକ୍ଷେ ହରଷେ
କହନ୍ତି, "ଗୋ ସତି ! ଆଜ ମୁଁ କୃତାର୍ଥ
ହେଲି ଏହାଙ୍କ ପରଶେ ।
ଏହାଙ୍କ ନିମନ୍ତେ ବନ୍ଧୁ ଦିନୁ ଶିବ,
ଭ୍ରମୁଛନ୍ତି ଛଦ୍ମବେଶେ,
ପ୍ରେମାନନ୍ଦ ନାମେ ପାଗଳ ସନ୍ନ୍ୟାସୀ
ରୂପେ ହଂସଧ୍ୱଜ ଦେଶେ ।"

କହୁଁ କହୁଁ ଏହା ଆସିଲେ ନାରଦ
ପ୍ରେମାନନ୍ଦ ସହ ଚଳି,
ଅପୂର୍ବ ସନ୍ନ୍ୟାସୀ ରୂପ ଦେଖି ସର୍ବେ
ବିମୁଗ୍‌ଧେ ଅଛନ୍ତ ରହି ।
ପ୍ରେମ ଗଦଗଦ ହୋଇ ପ୍ରେମାନନ୍ଦ
କହନ୍ତି, "ବତ୍ସ ନାରଦ !
ଆଜ ପାଗଳାମି ଛୁଟିଲା ମୋହର
ପାଇଲି ବାଞ୍ଛିତ ପଦ *
ଦେଖ ହିସ୍ରୋଚାର ସକଳେ ଭାସନ୍ତି
ବୈଷ୍ଣବରଚନ ବେନି,
ମହା କୃତାର୍ଥ ମୁଁ ହେବି ଯାହାଙ୍କର
ଅସ୍ଥିମାଳ ବକ୍ଷେ ଘେନି ।
ଢାଅ ଢାଅ ଗଙ୍ଗେ !" କହି ଜାହ୍ନବୀଙ୍କ
କକ୍ଷରୁ ଆଣି ସତ୍ୱର
ବେନଜାନୁ ପରେ ବେନ ଭକ୍ତବୀରେ
ବସାଇଲେ ବସି ହର ।
ସେ ସ୍ୱର୍ଗୀୟ ଦୃଶ୍ୟ କରି ସନ୍ଦର୍ଶନ
ଏ ଭାବ ଆସଇ ହୃଦେ,
କ୍ଷୀର-ସିନ୍ଧୁ ବକ୍ଷେ ଯୁଗଳ ଚନ୍ଦ୍ରମା
ସହସା ହେଲେ କି ଉଦେ ?
ତାରକା ପରାଏ ଦେଖି ଚକ୍ଷୁସ୍ୱୟ
ରହିଛନ୍ତି ବେନି ପାଶେ

---

* ପଦାର୍ଥ

ମହେଶ୍ୱର ପଦେ ଲୋଟାଉଛୁ ଶିର,
ହିସ୍ରୋତା ଗୀତ ଉଲ୍ଲାସେ ।
ଅଦୂରେ ଶ୍ରୀକୃଷ୍ଣ ପାର୍ଥ ଅଗ୍ରଜତ
ଅନାଇଛନ୍ତି ନଶ୍ଚଳେ
ପାର୍ଶ୍ୱେ ଉଭା ହୋଇ ନାରଦ ବକ୍ଷକୁ
ଭସାନ୍ତି ପ୍ରେମାଶ୍ରୁ ଜଳେ ।
ପଞ୍ଚଶ ବୈଷ୍ଣବ ରତନଙ୍କୁ ଗର୍ଭେ
କରିଥିବାରୁ ଧାରଣ
ଏ ମହା ସୌଭାଗ୍ୟ ଲଭି ସିନା ଆଜ
ହେଲୁ ଭଦ୍ରାବତୀ ଧନ୍ୟ ।
ଶତ ଶତ ମାତୃ- ବତ୍ସଳ କୁମର
ହରାଇଥିଲେହେଁ ସେଥି
ଆଜ ନାମ ତାର ଅକ୍ଷୟ ଜଗତେ
ଏ ଗୌରବ ସ୍ମୃତି ନେଇ ।
ଭଗ୍ନଦୂତ ମୁଖୁଁ ପୁତ୍ରଙ୍କ ନିଧନ
ବାରତା ପାଇ ନରେଶ,
ଉନ୍ମତ୍ତ ପରାଏ ରାଣୀ ସହ ଆସି
କଲେ ସେଠାରେ ପ୍ରବେଶ ।
କାଳିନ୍ଦୀରେ କୃଷ୍ଣେ କାଳୀୟ ଦଂଶନ
ବାରତା ପାଇ ବ୍ୟାକୁଳେ
ଆସିଥିଲେ ଯଥା ବ୍ରଜପୁରପତି
ନନ୍ଦ ଯଶୋମତୀ ଭୁଲେ ।
ତପତ ଲୌହରୁ ସ୍ଫୁଲିଙ୍ଗ ପରାଏ
ମୁଞ୍ଚନ୍ତି ବେଦନଏ ଶ୍ୱାସ,

ବାହ୍ୟଜ୍ଞାନଶୂନ୍ୟ, ଅସ୍ତବ୍ୟସ୍ତ ଚଳେ
ଶ୍ଳେଟେ ପରିଧେୟ ବାସ ।
ତ୍ରିବେଣୀର ଧାର ଦେଖି ନରବର
କହନ୍ତି ହୋଇ କାତର,
"କାହିଁ ରଣସ୍ଥଳ ? କାହାନ୍ତି ସୁଧନ୍ୱା,
ସୁରଥ ବେନି ମୋହର ?
ପ୍ରୟାଗ ତ୍ରିବେଣୀ- ଧାର ଏ ତ ରାଣୀ !
ବହୁଅଛି କଳକଳେ,
ପଥଭ୍ରମେ ଏତେ- ଦୂରକୁ ଆସିଲି
ଚାଲ ଫେରି ରଣସ୍ଥଳେ ।"
ଜଳଦ ଗମ୍ଭୀର ବଚନେ ଶ୍ରୀକୃଷ୍ଣ
ବୋଇଲେ, "ହେ ମହାରାଜ !
ଫେର ନାହିଁ, ଫେର ନାହିଁ, ଦେଖ ତବ
ସୌଭାଗ୍ୟର ଦୃଶ୍ୟ ଆଜ ।
ତବ ବେନି ପୁତ୍ରେ ଦେବ ପଞ୍ଚାନନ
ଧରିଛନ୍ତି ଅଙ୍କେ ସ୍ୱୟଂ,
ସ୍ୱରୂପେ ଆଗତ ଜାହ୍ନବୀ, ଯମୁନା,
ସରସ୍ୱତୀ, ଦୁର୍ଗା ସହ ।"
ଅମୀୟ ବଚନ ଶୁଣି ନରନାଥ
ଚାହିଁଦେଲେ ଚମକତେ,
ନରନାରାୟଣ ଯୁଗଳ ମୂରତି
ଦେଖି ପୁଲକିତ ଚିତ୍ତେ,
କର ଯୋଡ଼ି ପଦେ ସାଷ୍ଟାଙ୍ଗେ ପ୍ରଣାମ
କଲେ ନୃପତିଦମ୍ପତି,

ଗଦ୍‌ଗଦ ବଚନେ     ରାଜା ହଂସଧ୍ୱଜ
କହନ୍ତି ମହିଷୀ ପ୍ରତି,—
"ପବିତ୍ର ଜୀବନ     ହେଲା ମହାଦେବ !
ପୂର୍ଣ୍ଣ ସକଳ ବାସନା,
ସଂସାରବନ୍ଧନେ     ନାହିଁ କାର୍ଯ୍ୟ, ଚାଲ
ଯିବା ସୁରଥ, ସୁଧନ୍ୱା ।"
ଏହି କାଳେ ଅଶ୍ରୁ-     ମୁଖେ ଅଭିଜିତ
ଛିଡ଼ା ହୋଇ ତାଙ୍କ ପାଶେ
କହେ ମହାରାଜ !     ଦୟା କରି ବାରେ
ଚାହାଁନ୍ତୁ ଏ ଦୀନ ଦାସେ ।"
ବୋଇଲେ ନରେଶ,     "ବତ୍ସ ଅଭିଜିତ !
ନ କର ବୃଥା ବାରଣ,
ଅସାର ସଂସାର-     ବନ୍ଧନରେ ମୋର
ନାହିଁ ଆଉ ପ୍ରୟୋଜନ ।
ଯାଅ ପୁରେ ଫେରି     ମୋ ଆଦେଶ ଧରି
କୁବଳୟାଙ୍କୁ ବିବାହ
କରି, ରାଜକାର୍ଯ୍ୟ     ସୁଚାରୁରୂପରେ
କରିବ ବତ୍ସ ନିର୍ବାହ ।
ଅଛି ଅଭାଗିନୀ     ବଧୂମାତା ମୋର
ଅନ୍ୟ ଆତ୍ମୀୟ ସ୍ୱଜନ,
ତାହାଙ୍କୁ ନିଜର     ଭାବି ଅଭିଜିତ
କରି ଲାଳନ ପାଳନ ।
ରାଜ୍ୟ ସହ ମୋର     ଯାବତ ଐଶ୍ୱର୍ଯ୍ୟ
କଲି ତୁମ୍ଭଙ୍କୁ ଅର୍ପଣ"

କହି, ରାଣୀସହ ତ୍ରିବେଣୀରେ ନୃପ
କଲେ ଦେହ ବିସର୍ଜନ ।
ନଗ୍ରଶ ଅନ୍ତରେ ଯାର ଅଭିଜଟ
କର୍ ବନ୍ଧୁଭି କ୍ରନ୍ଦନ
ଭଗ୍ନସୈନିକଙ୍କୁ ସଙ୍ଗତରେ ନେଇ
ନଗରେ କଲେ ଗମନ ।
ରାଜା, ରାଣୀ, ପ୍ରେମ, ସୁଧନ୍ୱା, ସୁରଥ;
ପଞ୍ଚ ମୃତକଳେବର
ଘେନ ବକ୍ଷେ ସ୍କୁର ଦେବୀଙ୍କ ସହିତେ
ଗମିଲେ କୈଳାସେ ହର ।
ଭକତ ଗୌରବ, ଭକତ ବିଭବ
ଭକତ ଭାଗ୍ୟ ପ୍ରଶଂସି
ଭକ୍ତ ଭାବେ ଶୋକେ ଗଲେ ବ୍ରହ୍ମଲୋକେ
ଭକ୍ତ ନାରଦ ମହର୍ଷି ।
ଭଦ୍ରାବତୀ ସୁଖ- ଶଶୀକ ଅତଳ
ଜଳଧି ଜଳେ ମଗନ
କରାଇ, ଅର୍ଜୁନ ସହ ଭଗବାନ
ଶୀଘ୍ରେ କରୁଁ ଗମନ,
ପ୍ରେମମୟୂ କରେ ପ୍ରାଭବ ସମରେ
ପାଇ ପବନନନ୍ଦନ
ସମର ଉପେକ୍ଷି ଗଙ୍ଗାକୂଳେ ଥିଲେ
ବିଭୁପଦ ଧ୍ୟାନେ ମଗ୍ନ,
ଅନ୍ୟାୟୂ ସମରେ ସୁଧନ୍ୱା, ସୁରଥ
ସଂହାର ହେବା ସନ୍ଦେଶ

ପ୍ରଦ୍ୟୁମ୍ନ ମୁଖରୁ ଶୁଣି, ମହାକୋପେ
ଧ୍ୟାନ ଉପେକ୍ଷି ବୀରେଶ,
ଧାଇଁଲେ ସମର ଭୂମିକୁ ପ୍ରଚଣ୍ଡେ
ଭୀଷଣ ଗର୍ଜନ କରି,
ଅଦୂରୁ ଦିଶଇ ଯୁଗଳ ନୟନ
ରକ୍ତଜବା ପୁଷ୍ପପରି ।
କହନ୍ତି ପ୍ରଦ୍ୟୁମ୍ନେ "କହ ବତ୍ସ ! କାହିଁ
ସେ ନରାଧମ ଅର୍ଜୁନ,
କାହିଁ ସେ କପଟୀ ପିଅର ଚୋହର
କରିବି ବେନଙ୍କୁ ଚୂର୍ଣ୍ଣ ।
ଅନ୍ୟାୟ ଅଧର୍ମ କପଟର ଆଜ
କରିବି ମୂଳୋତ୍ପାଟନ,
ପୃଥିବୀରୁ କରି ସେ ନରପିଶାଚ
କୃଷ୍ଣ ଅର୍ଜୁନେ ନିଧନ ।"
କହୁ କହୁ ହେଲେ କୃଷ୍ଣ ଅର୍ଜୁନଙ୍କ
ସମକ୍ଷରେ ଉପସ୍ଥିତ,
ସେ ସଂହାର-ମୂର୍ତ୍ତି ସନ୍ଦର୍ଶନେ ହେଲେ
ବେନସଖା ମହାଭୀତ ।
ପ୍ରବୋଧି ଭୀମକୁ କହନ୍ତି ଶ୍ରୀକୃଷ୍ଣ,
ଶାନ୍ତ ହୁଅ ବୃକୋଦର !
କାହିଁପାଇଁ କୋପ କରୁଛ ଏପରି
କି କାର୍ଯ୍ୟ ଦେଖି ଆମ୍ଭର ?"
ବୋଇଲେ ପାବନ "ଆଜ ତୋ ପ୍ରବୋଧ
ବାକ୍ୟ ନ ଶୁଣିବି ହରି !

କହ କପାଁ ଆଜ ଏଡ଼େ ନିର୍ଦ୍ଦୟେ ତୁ
ଭକ୍ତଙ୍କୁ ଦେଲୁ ସଂହାର ।
ତୋର ଚନ୍ଦ୍ରୁ ବଳି ତୋର ଭକ୍ତମାନେ
ମୋର ଅତି ପ୍ରିୟତର,
ସେ ଭକ୍ତଙ୍କୁ କପାଁ ଅନ୍ୟାୟ ସମରେ
ନାଶିଲୁ ? କହ ସତ୍ୱର ।"
ସସ୍ମିତେ ଶ୍ରୀକୃଷ୍ଣ କୋଇଲେ, "କାହିଁକି
ହୋଇ ବୃଥା ମୋହମୁଗ୍ଧ
ସୁଧନ୍ୱା ସୁରଥ ପାଇଁକି ମନକୁ
କରୁଅଛ ଏତେ କ୍ଷୁବ୍ଧ ?
ଭକ୍ତ ମୋର ପ୍ରାଣ, ଭକ୍ତ ମୋର ମନ,
ଭକ୍ତ ମୋର ସର୍ବମୟ,
ଭକତ ମଙ୍ଗଳ- କାର୍ଯ୍ୟେ ସଦା ବ୍ରତୀ
ଅଟଇ ମୋର ହୃଦୟ ।
ସୁଧନ୍ୱା ସୁରଥ ଅଟନ୍ତି ମୋହର
ନିତ୍ୟଧାମ ସହଚର,
ଅଳ୍ପରେ ମୋ ମର୍ତ୍ତ୍ୟ- ଲୀଳା ହେବ ଶେଷ
ସେଥିପାଇଁ ବୃକୋଦର !
ସୁଧନ୍ୱା, ସୁରଥ ହଂସଧ୍ୱଜ, ରାଣୀ
ସହିତେ ପ୍ରେମମୟୀଙ୍କୁ
ଏ ଭକ୍ତ ଉଦ୍ଧରି ପ୍ରେରିଲି ଅଗ୍ରେ ମୋ
ଗୋଲୋକ ଲୀଳା ଧାମକୁ ।"
ବୋଇଲେ ମାରୁତି, "ଏ ମିଥ୍ୟା ଛଳନା
କଥାକୁ ମୋର ବିଶ୍ୱାସ

ହେଉ ନାହିଁ ତଳେ, ନ ଦେଖିଲେ ତାହା
କରିବ ତୁମ୍ଭଙ୍କୁ ନାଶ ।"
ଫିଟିଲା କରୁଣା- ମୟୁ କରୁଣାରେ
ଗୋଲୋକ ବୈକୁଣ୍ଠଦ୍ୱାର
ମିଳନର ଊର୍ଦ୍ଧ୍ୱେ, ଦ୍ୟୁଲୋକେ ଭୂଲୋକେ
ପ୍ଲାବଦେଇ ଜ୍ୟୋତିଧାର ।
ଫିଟିଯାଏ ଯଥା ନିଶାନ୍ତେ ସୁନୀଳ
ପାରାବାର ସୀମାନ୍ତରେ,
ସୁବର୍ଣ୍ଣ ତୋରଣ ଊଷା ଆଗମନେ
ପରଚୀ ଭିତ୍ତିମୂଳରେ ।
ଦିବ୍ୟ ସିଂହାସନେ ବିରାଜିତ ତହିଁ
ଶ୍ରୀରାଧାକୃଷ୍ଣ ଯୁଗଳ
ଲୋଟି ପଡୁଅଛି କୋଟିଚନ୍ଦ୍ର ପ୍ରଭା
ଆଲୋକରାଶି ବିମଳ ।
ଦେବବାଳାଗଣ ସହିତେ ଉଭୟ
ପାର୍ଶ୍ୱେ ଉଭା ହୋଇଛନ୍ତି
ସୁଧନ୍ୱା, ସୁରଥ, ରାଜା ହଂସଧ୍ୱଜ
ମହାରାଣୀ, ଇନ୍ଦୁମତୀ ।
ଚକ୍ରାକାରେ ବେଢ଼ି- ଅଛି ସର୍ବ ଦେହେ
ସୁନ୍ଦର ପ୍ରଭାମଣ୍ଡଳ,
ବେଢ଼ିଥାଏ ଯଥା ବିଧୁଙ୍କୁ ବିବିଧ
ବର୍ଣ୍ଣେ ପରିଧି ଉଜ୍ଜ୍ୱଳ ।
ବିସ୍ତାରିତ ପିପା- ସିତ ନୟନରେ
ବୃକୋଦର ଧନଞ୍ଜୟ

ସେ ଅପୂର୍ବ ଦୃଶ୍ୟ ଦେଖନ୍ତି, ଅପୂର୍ବ
ପୁଲକେ ହୋଇ ତନ୍ମୟ ।
ନାରୀବେଶ ଦେଖି ପ୍ରେମରେ ବିସ୍ମିତ
ହୁଅନ୍ତେ ପବନସୁତ,
ଜାଣିପାରି ତାହା ସେ ଗୂଢ଼ ରହସ୍ୟ
କହନ୍ତି ତାଙ୍କୁ ଅଚ୍ୟୁତ—
"ଛଦ୍ମବେଶୀ ପ୍ରେମ- ମୟ୍ମ ସୁଧନ୍ୱାର
ନିତ୍ୟଧାମ ପ୍ରେମବାସୀ,
ସକାମ ନିଷ୍କାମ ଦୁଇ ଅଂଶେ ମର୍ତ୍ତ୍ୟେ
ଜନ୍ମ ଲଭିଥିଲି ଆସି ।
ସକାମ ଅଂଶରୁ ଜନ୍ମି ପ୍ରଭାବତୀ
ହେଲା ସୁଧନ୍ୱାର ନାରୀ,
ଗଲା ନିତ୍ୟଧାମେ ନିଷ୍କାମ ପ୍ରେମିକା
ସିନ୍ଧୁ ନିପତନ୍ତି କୁମାରୀ ।"
କହୁ କହୁ ଗଲା ସହସା ସେ ଦୃଶ୍ୟ
ଅନନ୍ତାକାଶେ ଉଭାଇ,
ପଲକ ମାତ୍ରକେ ଭଙ୍ଗୁର ସୁଖର
ଆଶା-ସଉଧ ନିଭାଇ ।
କାଦମ୍ବିନୀ ଜଳ ଲଭି ଲଭେ ଯଥା
ଘୋର ଦାବାଗ୍ନି ନିର୍ବାଣ,
ତଥା ଶ୍ରମ ଶାନ୍ତ ହୋଇ କରଯୋଡ଼ି
କହନ୍ତି, "ହେ ଭଗବାନ !
ସତ୍ୟ ସତ୍ୟ ତୁମ୍ଭେ ଚିର ସତ୍ୟ ହରି !
ତୁମ୍ଭେ ଏ ବିଶ୍ୱର ପତି,

ତୁମ୍ଭେ ନାରାୟଣ, ବ୍ରହ୍ମ ସନାତନ,
ବିଶ୍ୱବନ୍ଧୁ, ବିଶ୍ୱଗତି ।
ଅପରାଧ ମମ କ୍ଷମ ଦୟାମୟ !
ଚିରଦାସ ମୁଁ ତୁମ୍ଭର”—
କହି ଶ୍ରୀକୃଷ୍ଣଙ୍କ ପଦରେ ସାଷ୍ଟାଙ୍ଗେ
ପ୍ରଣମିଲେ ବୃକୋଦର ।
ସାଦରେ ଭୀମକୁ ସ୍ନେହେ ଆଲିଙ୍ଗନ
କରି କରୁଣାନିଧାନ ।
ସ୍କନ୍ଧାବାରେ ବିଜେ କଲେ ଭକ୍ତମେଧ
କାର୍ଯ୍ୟ କରି ସମାଧାନ ।

---

ସମାପ୍ତ

ମୁଦ୍ରଣ—ନବ ପବ୍ଲିଶିଂ ପ୍ରେସ୍, ବାଲୁବଜାର, କଟକ—୨

